# ଧୂପ

ମାୟାଧର ମାନସିଂହ

—ଆଠ ଅଣା—

ଉତ୍ସର୍ଗ

ଶ୍ରୀମତୀ ହେମଲତା ଦେବୀ

କାନ୍ତ କରେଷୁ ।

ଲେଖକ



# ବିଜ୍ଞପ୍ତି



ଏହି କବିତାଗୁଡ଼ିକ ମଧ୍ୟରୁ କେବଳ ଛଗୋଟି କବିତା 'ଉତ୍କଳସାହିତ୍ୟ'ରେ ପ୍ରକାଶିତ ହୋଇଥିଲା । ଅନ୍ୟ ସମସ୍ତହିଁ ଅପ୍ରକାଶିତ ଥିଲା ।

ଏ ପୁସ୍ତକର ମୁଦ୍ରଣ କାର୍ଯ୍ୟରେ ମୋର ବନ୍ଧୁ ଶ୍ରୀମାନ ସାଧୁଚରଣ ମହାନ୍ତି ଓ ଶିଶୁସାହିତ୍ୟ ଲେଖକ ଶ୍ରୀମାନ୍ ଜଦୁନାଥ ଷଡ଼ଙ୍ଗୀ ମୋତେ ବିଶେଷ ସାହାଯ୍ୟ କରିଛନ୍ତି । ମୁଁ ସେମାନଙ୍କ ନିକଟରେ ଅନ୍ତରର କୃତଜ୍ଞତା ଜଣାଉଅଛି । ଇତି ।

ଲେଖକ

# ତରୁଣ କବିର ଆଶା



ଏତେ ଭରିଛି ସେ, ପାଏ କି ଭାଷା,
ହାୟ ରେ ତରୁଣ କବିର ଆଶା

ଭାବିଥିଲି ଯିବ ଅସୀମ ପଥେ
ସୁରଭି-ଶୀତଳ-ମଳୟ ରଥେ
କୁସୁମ-ଫଗୁଳ ଫଗୁଣ-ପୁରେ
ବାନ୍ଧି ଗୋ ଦୂରେ !





ଅଶୋକକଳିକା ଶ୍ରବଣେ ଗୁଞ୍ଜି
ଚରମେ ଝୁଲାଇ ବଉଳ-ପୁଞ୍ଜି
ସହମଳ ପଛ ଯାଆନ୍ତି ମିଶି
ମୁଁ ଦଣଦଣି ।

ପରିମଳ ସମ ଗଗନେ ଭାସି
ପାଗଳ ବସନ୍ତ ଜୋଛନାରାଶି,
ଜୋଛନା ଡାକନ୍ତା 'ଆସ ହେ ପ୍ରିୟ,
ଚୁମ୍ବନ ନିଅ !'

ଚଇତ୍ର-ପବନ ସଙ୍ଗୀତ ଧରି
ସେ ପାର ଆକାଶେ ଯାଆନ୍ତି ଚଳି,
ମୂର୍ଚ୍ଛି ଲଭନ୍ତା ପରାଣ ମମ
ବନ୍ଦିନୀ ସମ !

କୋକିଳ ଡାକନ୍ତା 'ଆସ ହେ ଭାଇ'
ତରୁଣ ସେ କବି ହୁଅନ୍ତା ବାଇ,
ଗୋଲାପ କହନ୍ତା 'ଆସିଲ ସତେ
ଏତେ ଦିନକେ !



# ତରୁଣ କବିର ଆଶା

ଭାବିଥିଲି ଘନ ବକୁଳ ତଳେ
ସୁରଭି କୁସୁମଶୟନ ପରେ
ଯାପିବି ଜୀବନ ପ୍ରେୟସୀ ଧରି
ସ୍ୱପନ ପରି !

ବାଛି ନେଇଥିଲି ମୋର ପ୍ରେୟସୀ
ଲାବଣ୍ୟ ପ୍ରତିମା, ସମବୟସୀ,
ଭାବିଥିଲି ତାରେ କରିବି ସାଥୀ
ପରାଣ ପାତି !

ଭାବିଥିଲି ଗାଢ଼ ପୃଥିବୀ ବାଧା
ପୂଜିବ ସେ ମୋର ହୃଦୟ-ରାଧା
ବଜାଇ ମୁରଲୀ ମୁଁ ଅବିରତ,
କାହିଁ ବିରତ ?

ଅମର ବୃନ୍ଦଣୀ ଯାମିନୀ ତଳେ
ସେ ରାଧା କୋମଳ ଜଘନପରେ
ଜୀବନ ମରଣ ପାଶୋରି ଭୁଲି
ସପନ ପରି !

# ଧୂପ



ଶଜନ ତଟିନୀ ବେତସ ଗେହେ
ଢାଳି ଦେଇଥାନ୍ତି ଅଳସ ଦେହେ,
ଚମକନ୍ତ ଶୁଣି ନୂପୂରଧ୍ୱନି
ପ୍ରେୟସୀମଣି !

ମାନସୀ ଆସନ୍ତା ଝୁଲାଇ ବେଣୀ
ଚକ୍ଷୁରେ ଚଳାଇ ନୟନ ବେଣି,
ଲଗାଇ ଦଅନ୍ତା ପ୍ରିୟରେ ତାର
କୁସୁମ ହାର !

ପାଣରେ ଥାଆନ୍ତା ରସ କବିତା
ଚିର-ଯଉବନ ପ୍ରଣୟ-ଗୀତା
ପ୍ରେୟସୀ ଗାଆନ୍ତା, ଚୁମନ୍ତ ମୁଖ,
ପୁରନ୍ତା ବୁକ !

ହାଇ ରେ ତରୁଣ କବିର ଆଶା
ଏଡ଼େ ବରିଷ୍ଠ ସେ, ପାଏ କି ଭାଷା,
ଆକାଶ ବସୁଧା କେତେ ସେ କରେ
ନିମିଷକରେ

## ତରୁଣ କବିର ଆଶା

କାହିଁ କଲପନା କାହିଁ ଜୀବନ,
ତରୁଣ କବିର ଜଳଇ ମନ,
ଗୃହଅଙ୍ଗୁ ବାଜେ ଦାରୁଣ ବାଧା,
କାହିଁ ତା ସୁଧା !

ନାହିଁ ସୁଧା ନାହିଁ ବେତସ-ଲୀଳା,
ନାହିଁ ପାଶେ ବେଣୀଦ୍ୱଲ ଛଇଳା,
ପ୍ରଣୟରେ ମାତି ହେବାକୁ ଗେଲ
କାହିଁ ତା ବେଳ !

ବାଲ୍ୟର ସାଥୀ ନାହିଁ ତା ପାଶେ,
ବାଳିକା ସେ ଗଲା ଆନର ଆଶେ,
କାହା ଗଲେ ସୁଖେ ଛନ୍ଦବ ବାହୁ
କହ ସେ ଆଜ ?

ରସିକ ହେବାର ଘୁଡ଼ିଲୁ ଆଶ,
କେ ବାଳା ବାନ୍ଧଇ ପ୍ରଣୟ-ପାଶ
କେବଳହିଁ ପ୍ରାଣ-ପୀରତି ଲଭି;
ଗରବ କବି !

ଗହନ କଣ୍ଟରେ ସଂସାର ପୀଡ଼େ,
କବିତାକୁ ବେଳ ନାହିଁ ଏ ଭିଡ଼େ,
ଫଗୁଣ ଚଳଇ ଚଇତ ଆସେ,
କି ଯାଏ ଆସେ !

ପ୍ରଣୟ-କବିତା-ସ୍ୱପନ ନାହିଁ,
ଝମଟେ ଝମିଟେ ଗଲେ ଜଗାଇ,
ମଣିଷ ବେଗରେ ଯାଉଛନ୍ତି ଦ୍ରବ
ତରୁଣ କବି !

ମଣିଷ ହୋଇ ତା ଏଡ଼େ ଚିନ୍ତାର
ଧରାରେ ସରଗ ସୃଜନା ଭାର,
ଏ କଳପନାକୁ ପାଏ କି ଭାଷା,
ହାଇ ରେ ତରୁଣ କବିର ଆଶା !



# ପାପ ଓ ପ୍ରେମ



୧

ହେ ସମବୟସି, ତୁମର ମୋର ଯେ ପୀରତି
ଈଶ୍ୱର କେତେ ବୋଲୁଛନ୍ତି ପାପ ଆରତି !
ତୁମରେ ବୋଲନ୍ତି କୁଳଟା ଅସତୀ ରମଣୀ
ମୋତେ ବା ବୋଲନ୍ତି ବ୍ୟଭିଚାରୀ ନୀଚ ବ୍ୟସନୀ
ବ୍ୟବହାର ଦେଖି ନିର୍ବୋଧ ଜନତାର ଗୋ
ତୁମ୍ଭେ ଅବା ନାହିଁ ବଞ୍ଚିବା ଅଧିକାର ଗୋ
ଏତେ ଅପରାଧ ଜୀବନେ କରିବା ପୀରତି
ହୃଦୟେ ହୃଦୟ ମିଶିବାକୁ ଗଲେ
ଧର୍ମ ରହେନା ପୁଣି ମହୀତଳେ
ଏକ ଆନ ପାଇଁ ଭାବିବା ଗୋ ପାପ-ଆରତି
ହେ ସମବୟସି, ତୁମର ମୋର ଯେ ପୀରତି ।



୨

ପ୍ରଣୟ କି କଥା ଜାଣିଥିଲେ ଏହା କହୁ କି ?
ପରାଣ ମିଳିଲେ ପାପ କିପାଁ ଆସେ ମହୀକି ?
ଚିରଜପବାସୀ କି ଜାଣିବ ଏହୁ ଜନତା
କି ପୀୟୂଷ ଢାଳେ ପରାଣେ ପ୍ରଣୟ-ମମତା ?
ଦରିଦ୍ର ପ୍ରେ ଗୋ ଜାଣିବେ କେସନେ ଜୀବନେ
କିବା ଅନୁଭବ ପୀରତି-ପୀୟୂଷ ସେଚନେ;
ପ୍ରିୟତମ ବୋଲି ଡାକିବା କି ସୁଖ ସଖିକି
ଏକ ହୃଦ କଥା ଆନ କାନ ପାଶେ
ଗୋପନେ କହିବା ଚୁପି ଚୁପି ଭାଷେ
ନୟନ ଲୋତକେ ସ୍ୱର୍ଗ କରିବା ମହୀକି
ପ୍ରଣୟ କି କଥା ଜାଣିଥିଲେ ଏହା କହୁ କି ?

୩

ଜନତା କି କେବେ ସୁଖ ଦୁଖ ମୋର ଜାଣିବ
ନୟନରୁ ଲୋତକ ପୋଛିବାକୁ କର ଆଣିବ
ପାପେ ତେବେ ମୋର କ ପାଇଁ ଏ ବ୍ୟଥା କହତ
ସେନେହ ଖୋଜିଲେ ସବେ କି ଧରମ ମହତ ?
ପରାଣେ ପରାଣ ମିଶିଲେ କି ନାରାୟଣ ହେ
ଶୁଣିଛୁ କେ କାହିଁ କରିବାର ପଳାୟନ ହେ
ସେ କଥା ମୂର୍ଖସମାଜ ତ ନାହିଁ ଜାଣିବ
ନିର୍ମମ ଖାଲି ଖୋଜେ ଅପରାଧ
ସୃଷ୍ଟି କରବ ମିଛ ଅପବାଦ
ଈଶ୍ୱର ନାମେ ହିଂସାରେ ବାଣ ହାଣିବ !



୪

ନୟନୁ ଯାହାର ଲୋତକ ମୋ ପାଇଁ ବହିଲା
ମୋ' ନୟନେ ସେ ତ ପରମ ପୂଜ୍ୟ ମହିଳା ।
ସତୀଶିରୋମଣି ନ ହେଲେ ବା ସେହୁ କାମିନୀ
ଅସତୀର ଲଭେ ନାହିଁକି ପ୍ରଣୟ-ଯାମିନୀ ?
ସତୀ ଅସତୀରେ ଭେଦ କି ହୁଏ ପରାଣ ?
ପ୍ରାଣ ଯଦି ଅଛି, ଅଛି ତେବେ ପ୍ରଣୟ-ଧିଆନ
ସତୀରେ ତା' ଗୁଣ, ଅସତୀରେ ଦୋଷ ହୋଇଲା
ମୂର୍ଖ ଜନତା କର ତା' ବିଚାର
ପ୍ରଣୟକୁ ଦିଅ ତାର ଅଧିକାର
ନ କହ ପୁରୁଣା ପୋଥି ଏଥେ କିବା କହିଲା,
ମୋ ନୟନେ ସେ ତ ପରମ ପୂଜ୍ୟ ମହିଳା ।

୫

ନୟନ-ବାରିରେ ସିକ୍ତ ଯା' ପ୍ରୀତି-ସରଣୀ
ଘୃଣ୍ୟ କି ହେଲା କୁଳଟା ବୋଲି ସେ ଘରଣୀ ?
ମଙ୍ଗଳ-ଦୀପ ଜାଳିଲା ଯେ ଏକ ଭବନେ
ସଙ୍ଗୀତମୟ କରିଲା ଯେ ଏକ ଜୀବନେ
ଛାୟାତଳେ ଯାର ପାଇଲା ଶାନ୍ତ ମଧୁର
ଆଜି ଏକ ପ୍ରାଣ କ୍ଳାନ୍ତ ବ୍ୟଥିତ ବଧୂର
ସେ ଜୀବନେ ମୂଲ୍ୟ ଦେବନି'କି ଏଇ ଧରଣୀ ?
ପ୍ରଣୟ କି ହାୟ ଏଡ଼େ ଅପରାଧ ?
ହିୟା ଖୋଲି ଦେଲେ ମିଳେ ଅପବାଦ
ମନର ମଣିଷେ ମନ ଦେଲେ ହାୟ, ଘୃଣ୍ୟ ହୋଇବ ଘରଣୀ ?

## ୨

ମୂର୍ଖ ଜନତା ବୁଝେ ନାହିଁ ମନ-ଯାତନା
ଏକ ଆନ ପାଇଁ ବଳିପିବା କିବା ଘଟଣା
ଜୀବନ-ଦୁଆର ରୁଦ୍ଧ ଗୋ ନୀତି-ପାଷାଣେ
ଜୀବନ-ଦେଉଳେ ଉଡ଼ାଏ ଗୋ ନୀତି-ନିଶାଣେ;
ସ୍ନେହର ମୂଲ୍ୟ ନିର୍ବୋଧ ଦେଇ ପାସୋର
ଦେହର ମୂଲ୍ୟେ ଧରିଅଛି ସେ ଗୋ ଆବୋର
ସ୍ନେହ ଯେ ଜୀବନେ କରିଦିଏ ପାପ ମାଜଣା;
ନାହିଁ ଜାଣେ ସର୍ବ ମୂର୍ଖ ଜନତା
ପାପ ବୋଲି କହେ ପ୍ରଣୟ-ମମତା !
ଅଶ୍ରୁ-ଧଉତ-ପୀରତିକି ପାପ-ଘଟଣା
ମୂର୍ଖଜନତା ବୁଝେ ନାହିଁ ପ୍ରୀତି-ରଚନା ।

୨

ତେବେ ଲକ୍ଷ୍ମୀ ତ୍ରା ସୁନ୍ଦର ପ୍ରାଣ-ସଜନ,
ସ୍ନେହେ ତବ ହେଉ ଆର୍ଦ୍ର ନିତ ମୋ ରଜନୀ
ମୂର୍ଖ ଜନତା କହୁଥାଉ ପାପ ବୋଲି ଗୋ
ତବ କରତଳ ଦିଅ ମୋ କପାଳେ ବୋଳି ଗୋ
ଈଶ୍ବର ଆଗେ ଏ ପାପ ଅଶ୍ରୁ-ଲଳିତ
ଦେଖାଇବା, ହେଉ ପାପ ଓ ପ୍ରଣୟ କଳିତ
ନର ଯା ବୁଝେଁ ନା ଦେବତା ବୁଝଇ ସଜନ ,
ଏହି ପାପ ଦେଇ ବେନି ପ୍ରାଣେ ସଖି
ଜୀବନ ଯାଉ ତା' ରସ-ଧାରା ରଖି
ଆଦରେ ଆର୍ଦ୍ର ହେଉ ମୋର ପାପ-ରଜନୀ
ପାପ ଦେଇ ମତେ ପୀୟୁଷ ପିଆଅ ସଜନ !



# ଗୋପନ-କଥା



ନ କହିବାକୁ ଯାହା ତମେ ଗୋ ଥିଲ କହି
ତମର ମୋର ସବୁ ଘଟିଛି ଯାହା ସହି,
ସାରଣ କଥା ରହି, ଝମିବ ମନେ ସଖି
ମୋ ସାଥୀ-ଜନେ ଶୁଣି, ଦେଇଛନ୍ତି ତାହା କହି
ନ କହିବାକୁ ଯାହା ତମେ ଗୋ ଥିଲ କହି ।

## ଗୋପନ କଥା

କେସନେ ଏତେ କଥା ଗୋପନେ ରଖି କହ
ଏତେକ ଗଉରବ, ନିବଢ଼ ଏ ପ୍ରଣୟ;
ସ୍ୱଣୀର ଏ ଯେ ମାନ, ପ୍ରିୟାର ଏ ଯେ ଦାନ
କାହାକୁ ନ ଦେଖାଇ ରହିବା ଦୁରୁବହ
କେସନେ ଏତେ କଥା ଗୋପନେ ରଖି କହ ।

ଜୀବନେ ଯଦ କିଛୁ ଥାଏ ମୋ' ଗଉରବ
ଶ୍ରେଷ୍ଠ ତହିଁ ସ୍ୱଣି, ପ୍ରଣୟ-ଦାନ ତବ;
ତା' ଧେନି ଏ ଜଗତେ ଜାଣିବେ ଲୋକେ ମତେ
ନ କହୁ ତାହା କେହ୍ନେ ରହିବ ମୁଁ ନୀରବ
ସେ ସର୍ବ ହେଲା ମୋର ଶ୍ରେଷ୍ଠ ଗଉରବ ।

କ୍ଷମିବ ସଖି ମୋର ଏକ ଏ ଅପରାଧ
କ୍ଷମିବ ଯଦ କିଛୁ ଘଟେ ଗୋ ପରମାଦ
ସ୍ନେହେ ସହି ଭାର, ରଖ ତ ହେମ-ହାର
ସେପରି ଏ ଦୋଷୀରେ ଦେବ ଗୋ ପରସାଦ,
ତୁମରି ଗୁଣ ଗାଇ ସିନା ଏ ଅପରାଧ ।



ପ୍ରିୟ ଗୋ ପ୍ରିୟ ଯାଇ ରହିଲ କାହିଁ
ଜୀବନେ ମିଳିବାର ସୁଯୋଗ ନାହିଁ
ଦୁହିଙ୍କ ଇତିହାସ
ଉଦରେ କରି ଗ୍ରାସ
ରହିଲା ତେଣେ ପଥ ପ୍ରବାସ-ବାହୀ
ଦୁହେଁ ଯେ ଦୁଇ ଦେଶେ ରହିଲେ କାହିଁ ।

ପ୍ରିୟାକୁ ଲଭିବାର ନାହିଁ ତ ଆଶ
ପ୍ରିୟା-ପାବନ ପଥେ ହୁଏ ମୁଁ ଘାସ
ସେ ପଥ-ରେଣୁ ତଳେ
ଶୋଣିତ ସମ ଥରେ
ପ୍ରିୟାର ସୁକୋମଳ-ଚରଣ-ବାସ
ସେ ଲଭେ ହେବ ମୁହିଁ ସେ ପଥେ ଘାସ ।



# ଅତ୍ରୁପ୍ତ୍ୟ



ଜଗତ ଯାଏ ନା ପ୍ରତେ
ଏତେ ଦାନ ତମେ ରାଣି ଯାହା ଦେଲ ମତେ

ରାଣୀ ତମେ, ତବ ପୂଜାସ୍ଥ ଗୋ ଶତ ଶତ
ଅଗୁରୁଗନ୍ଧେ ଆମୋଦିତ ତବ ପଥ
ପ୍ରାଙ୍ଗଣେ ତବ ମେଲା କେତେ ରସିକର
ଧନିକ, ସୁଭଗ;—ଲଭିବାକୁ ତବ କର
ସେ ସକଳୁ ବାଛୁ ଦରିଦ୍ର ଅନୁରାଗେ
ସେ ମୋହନକର କଣ୍ଠେ ମୋ ଖାଳି
ବନ୍ଧି ଅଧରେ ଗାଢ଼େ ଦେଇ ଢାଳି
ସମ୍ରାଟ ଯାହା କରିଦେଲ ରାଣି ମତେ
ଜଗତ ଯାଏ ନା ପ୍ରତେ ।

# ଧୂପ

ଅପଦାର୍ଥର ଥିଲା କିବା ଅଧିକାର
ପ୍ରଣମ୍ୟେ ଗୋ ତବ, ଅସ୍ମି ଦୟା-ଅନୁସାର
ସ୍ୱଣୀ ତମେ ବାଣୀ ନ ଆସେ ରୂପକୁ ତବ
ହାଣି ଆଖି ଢାଳ ଦଅ ଶୀର୍-ଗଉରବ,
କେତେ ତ ଭିଖାରି ଘେରିଥିଲେ ତବ ରଥେ
 କଲ ଯା ସକଳେ ଦୂରେ ପରିହାର
 ଡାକି ନେଇ ପାଶେ ଦେଇ ଅଧିକାର
ଗୁରୁ ଗୌରବେ ଗର୍ବିତ କଲ ମତେ
 ଜଗତ ଯାଏ ନା ପ୍ରତେ ।

ଦୂରୁ ଦେଖି ଗୁରୁ ପରସ୍ୟେ ପ୍ରଣତ ବନ୍ଦ
ତବ ପଥ-ରେଣୁ କପାଳେ ଥିଲି ମୁଁ ଲବ୍ଧ ।
ତବ ସଙ୍ଗସଭା ଉତ୍ସବ ଘନ ରବ
ଆଣୁଥିଲା ସ୍ୱଣି, ବିମୁଗ୍ଧ ଅନୁଭବ
ଦୂରୁ ଦେଖି ଝରେ ବରି ନେଲ ଯାତ୍ରା ପଥେ
 ପ୍ରେମ-ମଧୁ ଦେଇ ପରାଣ-ପିପାସା
 ନିବାରି, ବଢ଼ାଇ ଦେଇ ମୋର ଆଶା
'ସଙ୍ଘ' ବୋଲି ମୁଖେ ଡକାଇଲ ଯାତ୍ରା ମତେ
 ଜଗତ ଯାଏ ନା ପ୍ରତେ ।

ତା'ପରେ ମଧୁରେ ପୁହାଇଲ କେତେ ଗୀତ
ଶୁଣାଇ ମୋ' ଆଗେ ପ୍ରଣୟ-ପେଲବ ଗୀତ
କହିଲ 'ହେ ମୋର ସଖା ଅନ୍ତରତମ
ଅନ୍ତରୁ ଦୂର ନ କରିବ ସ୍ନେହ ମମ'
ଜୀବନର ଦାନ ଢାଳି ଦେଇ ମୋର ପଥେ
ପସ୍ୱଣେ ଯା' ଢାଳି ଦେଇଗଲ ମଧୁ
ଆଜ ଲୋଭନୀୟ ଅସ୍ପୃ ବରବଧୂ
ଚିରକାଳ ଲାଗି ଧନବାନ କରି ମତେ
ଜଗତ ଯାଏ ନା ପ୍ରତେ ।

ଏ ଯେ ଗୌରବେ ଯୋଗ୍ୟ ମୁଁ ନକ୍ଷ ସଖି
ସରମେ ସଲଖେ ଚରଣ ନ ପାରେ ରଖି
ଯାଚନେ ହାନେ ଏଇ ମହାସମ୍ମାନ ଢାଳି
ଚଉଦଗେ ଖାଲି ଉଠାଇଛ କରତାଳି
ଅସ୍ପୃ ଗଣି ଏବେ ଏଣେତେ ଲଗୁଅ ମତେ
ଜନତାର ଏଇ ରୁଢ଼ ପରିହାସ
କଥା କହିବାର ଧରି ଦରହାସ
ବଡ଼ ବ୍ୟଥା ଦଏ, କି କରିବ କହ ସତେ
ଜଗତ ନ ଯାଏ ପ୍ରତେ ।



# ଦେଖା ହେଲା କିପାଁ



ଦେଖା ହେଲା କପାଁ    ଦେଖା ହେଲା କପାଁ
ହେ ସହଚର,
ବାଜିଲା କିପାଇଁ    ଅପବାଦ କହ
ଜଗତ ଭର ।

ତୁମେ କାହିଁ ଥିଲ,    ମୁହିଁ ଥିଲି କାହିଁ
ଥିଲା କି ଚାହିଁ ?
ଦୁହିଙ୍କ ଜୀବନ    ସୁଖେ ଚଳୁଥିଲା
ଦୁହିଙ୍କ ବନା ।

—୨୨—

## ଦେଖା ଦେଲ କିପାଁ

ପରିହାସେ କିଗୋ     ଦୁହିଙ୍କି ବିଧାତା
ଦେଲ ଭେଟାଇ ?
ଭେଟୁ ଭେଟୁ ଦୁହେଁ     ପରମ ଝୁଞ୍ଜିଲୁ
ପ୍ରଣୟ ପାଇଁ ।

ବହୁକାଳୁ ମତେ     ଗୃହିଁ ବସିଥିଲ
ଯେସନେ ସନ୍ଧ
ଯୁଗଯୁଗାନ୍ତ—     ପ୍ରଣୟ-ପିପାସା
ହୃଦୟେ ବନ୍ଧ ।

ଅତି ପରିଚିତ     ସମ ତରୁଣୁ ମତେ
ଡାକିଲ ପାଶେ
ଗୁରୁ ଅପମାନ     ବରିନେଲ ମୋର
ପୀରତି ଆଶେ ।

ମନା ମାନିଲନି,     ବନ୍ୟା-ନଦୀର
ପ୍ରବାହ ସରି
ମୋ ପାଶେ ଆସିଲ,     କୁଳ, ମାନ, ଖ୍ୟାତି
କା'ରେ ନ ଡରି ।

# ଧୂପ

ସଞ୍ଜଲେ ଜାଣିଲେ        ନିନ୍ଦା ରଟିଲେ
ମାଇଲେ ଡାଳ
ଗୁରୁଜନେ ଦେଲେ        ଲାଞ୍ଛନା ଶତ
ଉପରେ ଡାଳ ।

କୁସୁମ-କୋମଳ        ତନୁରେ ଲାଗିଲା
କଠିନ ବ୍ୟଥା
ନିଠୁର ସରମେ        ଇତରଙ୍କ ଆଗେ
ନଇଁଲା ମଥା ।

ଆହା ଏତେ କଥା        ହେବ ବୋଲି କହ
କେ ଭାବିଥିଲା
ପ୍ରଥମେ ଯେ ଜନ        ସେ ଆଖିରେ ମୋର
ଆଜି ମିଶିଲା ।

ଦେଖୁ ଦେଖୁ ହାୟ,        ଚୁମ୍ବକ ସମ
ହୋଇଲେଁ ଠାଣି
ପ୍ରଣୟେ ବିପଦ        ଯାହା ସବୁ ତାହା
ଜାଣି ଗୋ ରାଣି !

## ଦେଖା ହେଲା କିପଁ ।

ଫଳେ ତା'ର ସଣି ସମାଜ ରଖିଛୁ
ଦୁହିଙ୍କି ବାର
ଦେଖା ହେଲେ ଛନେ କହୁଥାଁନ୍ତି କଥା
ନୟନ ଠାରେ ।

ହାସ୍ୟ ସଣି ଦୁଇ ଅଚାନ୍ନା ସେଦନ
ମିଳିଲେ କାହୁଁ
ଜୀବନଟାଯାକ ସନ୍ତୁବାଲୁ ହେଲା
ମିଳନ-ଦାଉ ।



## ଅଶ୍ରୁର ଆନନ୍ଦ



ଥର ଥର କରି ଅଶ୍ରୁ ମୋ ବହିଯାଏ
ପ୍ରିୟ ଗୋ ମୋର
ତହିଁରେ ମୁଁ ତବ ଗଭୀର ସରଣ ପାଏ ।

—୨୭—

## ଅଶ୍ରୁର ଆନନ୍ଦ

ପୀରତି ତୁମର ନିବିଡ଼ ଦେଇଛୁ ବ୍ୟଥା,
ଗଭୀର ପ୍ରବେଶ, ବ୍ୟଥା ନାହିଁ ପାଏ କଥା,
ପ୍ରିୟ ଗୋ ମୋର
ଏକ ଭାଷା ତାର ଅଶ୍ରୁ ଓ ନୀରବତା ।

ସେହି ଭାଷା ଢେନି ହୃଦୟ ମୋ ଥରେ ଥରେ
ତରଳ-ବ୍ୟଥାରେ ଗଣ୍ଡ ମୋ ଓଦା କରେ
ପ୍ରିୟ ଗୋ ମୋର
ପ୍ରଣୟ ତୁମର ପାଏ ସେ ଅଶ୍ରୁ ତଳେ ।

ପୀରତିରେ ଏତେ ବେଦନା ନ ଥିଲି ଜାଣି
ବେଦନାରେ ପୁଣି ସୁଖ ମିଳେ ଏତେ ଗୁଣି
ପ୍ରିୟ ଗୋ ମୋର
କିବା ଦେଲ ମତେ ପ୍ରଣୟର ବାଣ ହାଣି !

ବ୍ୟଥା ତଳୁ ମତେ ଆନନ୍ଦ ଅଛ ଦେଇ
ଏତେ ଦାନ ମତେ ଜୀବନେ ଦେଇନି, କେହି
ପ୍ରିୟ ଗୋ ମୋର
ଜୀବନ ମୋହର କଣ୍ଟୁଅଛ ବ୍ୟଥା ଦେଇ ।

# ଧୂପ

ତୃପ୍ତ ନୀରଧାରେ ନିକଟତର ଗୋ ଆସ
ସେତେ ଆପଣାର ଯେତେ ଦିଅ ପ୍ରାଣେ ପ୍ରାସ,
ପ୍ରିୟ ଗୋ ମୋର
କ୍ରନ୍ଦନେ ପାଏ ଜୀବନ ମୋ ଅବକାଶ ।

ଅଶ୍ରୁ-ଆହୁତ, ପ୍ରେମ-ଯଜ୍ଞେ ମମ
ବ୍ୟଥାର ଅଗ୍ନି ଜଳୁଅଛି ନିର୍ମମ
ପ୍ରିୟ ଗୋ ମୋର
ଲଭୁଛ କି ମୁହିଁ ଗୃହେଁ ତା'ର ଉପଶମ ?

ନାହିଁ ସଙ୍ଗୀ ନାହିଁ ! ଗୃହେଁ ମୁଁ ପରମ ବ୍ୟଥା
ନୟନେ ଲୋତକ, ମୁଖେ ଅବ୍ୟକ୍ତ କଥା ।
ପ୍ରିୟ ଗୋ ମୋର
ଏହିଁରେ ପାଏ ମୁଁ ଜୀବନର ସଫଳତା ।



# ପ୍ରଣୟ-ବ୍ୟଥା



ଅୟି ପ୍ରିୟେ,
ଜାଣ କି ଗୋ ପ୍ରେମ ତବ କିବା ବ୍ୟଥା ଦିଏ ?
ଅକାରଣ ଶତବାର ନେତ୍ରୁ ମୋର ନୀର ବହି ପଡ଼େ
ଅକାରଣ ବା'ର ବାର ବକ୍ଷତଳୁ କି ବିଳାପ ଝରେ ।
ବୈଶାଖ କାନନ ସମ ଦଗ୍ଧ ମତେ କରେ ନିଜ ନିଆଁ ।
ଏକଇ ଭାରଣ ବୋଲି ହୃଦୟ ମୋର ଡାକେ 'ପ୍ରିୟା' 'ପ୍ରିୟା' ।
ମନେ ହୁଏ ଧୂପ ସମ ଦଗ୍ଧ ହୋଇ ବାଷ୍ପ ଯିବ ହୋଇ
ପ୍ରଣୟର ଅଗ୍ନି ଶେଷେ ପ୍ରଣୟର ଭସ୍ମ ଯିବ ଥୋଇ ।
ବକ୍ଷେ ମୋର ଯଜ୍ଞ ଜଳେ, ତୁମେ ତହିଁ ଜୀବନ-ଦେବତା
ଆତ୍ମା ମୋର ଯଜ୍ଞ-କାଷ୍ଠ, ଘୃତାହୁତ ତୁମର ମମତା ।
ଅହରହ ଏହି ଯଜ୍ଞ ଜଳୁଅଛି ଅନ୍ତରେ ମୋହର
ମୋ ଜୀବନ ଶୋଷୁଅଛି ତା' ଶିଖାରେ ନିତ୍ୟ ପଳ ପଳ ।
ଅନନ୍ତ ବେଦନା ମୋର, ପ୍ରତିରକ୍ତେ ଅନନ୍ତ ପିପାସା
ଶରୀର ବନ୍ଧନ ଭେଦି ତୁମ ସଙ୍ଗେ ମିଶିବାର ଆଶା ।
ସେ ଆଶା ତ ବାଧା ପାଏ; ବାଧା ପାଇ କରଇ ଗର୍ଜନ ।
ଶୋଣିତ-ତାଣ୍ଡବ ତଳେ ଚିତ୍ତ ମୋର ଲଭଇ ମଜ୍ଜନ ।

## ଧୂପ

ମୂର୍ଖ ପାତି ଶଯ୍ୟା ପରେ ଶୋଇ ରହେ ଅଚେତନ ପରି
ତୁମ ନାମ ଘୋଷି ହୁଏ ଅସ୍ଥି ମୋର ଆକୁଳେ ଗୁମରି ।
ଯେତେ ଡାକେ ତେତେ ଦୂରେ ପ୍ରିୟା ତୁମେ କର ପଳାୟନ
ବ୍ୟାକୁଳ ଅନ୍ତର ମୋର ବ୍ୟର୍ଥ ବୋଲି ଭାବଇ ଜୀବନ ।
ଅହରହ ଆଶଙ୍କାରେ ଚିତ୍ତ ମୋର ପୂର୍ଣ୍ଣ ଅଛି ରହି ।
'ଭ୍ରାନ୍ତ ତୁମେ' ବୋଲି ଯେବେହେଁ କିଏ ମତେ ଦେଉଅଛି କହି ।
କେବେ ବା ଭାବଇ ଲାଜେ ଦୀନ ହୀନ ଅକିଞ୍ଚନତମ
ତୁମର ପ୍ରଣୟ ଖାଲି ଦେଖାଉଛି ମୁହିଁ କି ଅକ୍ଷମ ।
ଆହତ ଭୁଜଙ୍ଗ ପରି ଚିତ୍ତ ମୋର କ୍ରୁଦ୍ଧ ହୋଇ ଉଠେ
ଫିଙ୍ଗିବାକୁ ସ୍ନେହ ତବ ଅଭିଶାପ ଉଠେ ମୋର ଫୁଟେ ।
କେବେ ବା ବିବେକ ମୋର ତେଇଁ ଉଠି କରଇ ଧିକ୍କାର
'ପାପ' 'ପାପ' ବୋଲି କ୍ଷଣେ କରେ ପ୍ରାଣେ ବିଦ୍ରୋହ ପ୍ରଚୁର ।
କେତେ ଆଶା, କେତେ ବ୍ୟଥା, କି ବିଷାଦ, ଆଶଙ୍କା କି ଅବା
ସବୁ ମିଶି ଚିତ୍ତେ ମୋର ଅହରହ କରିଛନ୍ତି ସଭା ।
ପାଗଳ ମୁଁ ହୋଇ ଉଠେ, ଏ ଅର୍ଗଳ ଫିଙ୍ଗିବାକୁ ମନ
ପ୍ରିୟେ, ମତେ ପ୍ରେମ ଦେଇ କିପାଁ ଏତେ କରୁଛ ଜଳନ ।
ତେଣୁ କହେ ପ୍ରିୟେ,
ପ୍ରେମ ତବ ଏ ପ୍ରେମିକେ ବଡ଼ ବ୍ୟଥା ଦିଏ ।



# ପ୍ରଣୟ-ସାଧନା



ସଖି,    ମୋହ ଲଗି ଲକ୍ଷ ନୟନ ତଳେ
ଦ୍ରୌପଦୀ ସମ ପାଅ ଯଦ ଅପମାନ
ପ୍ରଣୟ-ଭିଖାରୀ ନୟନେ ମୋ ଚାହିଁ ଥରେ
ହେଉ ଗୋ ତୁମର ଲଜ୍ଜାର ଅବସାନ ।

ସଖି,    ରାଜପଥେ ହେଲ ଯଦ ଉଭା ଆସି
ଶ୍ରମ-ଶଙ୍କିତ ହେଲେ କି ସରିବ ପଥ ?
ମତେ ଚାହିଁ ଭୁଲ ପଥର ଯାତନାରାଶି
ସୁଭଦ୍ରା ସମ ବାହ ଗୋ ପ୍ରଣୟ-ରଥ !

ସଖି,    ସତୀ ସମ ଲଭୁଁନା ଯଦ ସହ
ଶିବ ସମ ମୁହିଁ ପ୍ରଣୟ-ସାଧନା ଜାଣେ
ଅପମାନ ଭରେ ପଥେ ଯଦ ଥକି ରହ
ମସ୍ତକେ ବହି, ମତ୍ତ ମୁଁ ଭୈରବ ଗାନେ ।



# ପ୍ରିୟାର ସାଧନା



ଅପମାନ ସହୁ     ପୁଣି ଆସେ ପାଶେ
ଯେ ସହଚରୀ
ନ ଦେବ ତାକୁ ମୁଁ ପ୍ରାଣ ଭରି ପ୍ରେମ
କହ କପରି ?

ମସ୍ତକ ତା'ର     ନଇଁ ଅଛି କୋଟି-
ନୟନ ତଳେ
ସବୁ ସହେ ପ୍ରିୟା   ନୟନ ରଖି ମୋ'
ଚରଣ ପରେ ।



## ପ୍ରିୟାର ସାଧନା

ପାସୋରିଲେ ମିଶେ ପ୍ରେମ ଦାଏ ମୋର
ଶକୁନ୍ତଳା।
ପାସୋରିବ ମନ କହ କେସନେ ସେ
ସୁକୁନ୍ତଳା।

ଗୌରବ ଭାର ହରାଇଲି ସବୁ
ମୋହର ଲାଗି
କୁଳ ମାନ ସବୁ ପଦେ ଦେଲି ମୋର
ପ୍ରଣୟ ମାଗି।

ଅପଥ କଣ୍ଟା ବାଛିଲି ରାଣୀର
ଚରଣ ତଳେ
ମୋ ଲାଗି ବାହାରୁ ପ୍ରେମ-ପିପାସିନୀ
ଜନତା ଭିତରେ।

ନିଷ୍ଠୁର କରୁ ପାଇଅଛୁ ରାଣୀ
ନିର୍ଯାତନା
ମୋହଲାଗି ଗଲି ସୁକୁମାରି ଭୁଲି
ସେ ଲାଞ୍ଛନା।

ଧୂପ

ତେଜ ଲଜ୍ଜିନା      ମାନ ନାହିଁ ପ୍ରିୟା
ପୀରତି ଲାଗି
ସବୁ ଦେଲା ତାର      ସୁଖ ମାନ ମୋର
ପ୍ରଣୟ ମାଗି ।

ଅକିଞ୍ଚନ ମୁଁ      ଦେଇଛି ମୋହର
ଥିଲା ଯା' ଘରେ,
ପ୍ରଜ୍ଞା ଦାନ ସାଥେ      ତାହାର କି ଆଉ
ତୁଳନା ଚଳେ !

ତାହା ଜାଣି ମିଶେ      ପ୍ରିୟା ତା' ପାଖ
ଭରଇ ନିତି
କହୁଲେ ସେ କହେ      'ନାରୀ-ପ୍ରଣୟର
ଏଇ ଯେ ରୀତି ।'

ନାରୀ ହୋଇ ପ୍ରିୟା      ଶିଖାଇଛି ମତେ
ପ୍ରେମ କିପରି ?
ସାଧନାର ତଳୁ      ପୀୟୂଷ କେସନେ
ପଡ଼ଇ ଝରି ।

## ପିୟାର ସାଧନା

ପାପ କି ପୁଣ୍ୟ     ବୁଝେ ନାହିଁ ପ୍ରିୟା
ପ୍ରଣୟ ଛାର,
ସେ ଖାଲି ଜାଣଇ     ପ୍ରିୟଲାଗି ତାର
ଲୁହ ଦେବାର ।

ଲୁହ ଦେଇ ପ୍ରିୟା,     ଲୁହ ଦିଆଇଛି
ନୟନୁ ମୋର,
ପ୍ରେମ ଦେଇ ମତେ     କରି ପକାଇଛି
ପ୍ରଣୟ-ଭୋର ।

ଆଜି ତେଣୁ ସବୁ     ଦୂର ଓ ନିକଟ
ଭୁଲି ମୋ ହିୟା,
ପ୍ରତି ନିଶ୍ୱାସେ     ଉଚ୍ଚାରି ଉଠେ
'ପ୍ରିୟା ଗୋ ପ୍ରିୟା ।'



# ବନ୍ଦିନୀ ପ୍ରେୟସୀ



ଧନ୍ୟ ସେ ଗୃହ-କାରା
ସୁଦୂରେ ଯହିଁ ଗୋ ବନ୍ଦିନୀ ମୋର
ଜୀବନର ଧ୍ରୁବ-ତାରା ।

ତାହାର ପ୍ରାଚୀରେ ବାଜି ହୁଏ ଲୀନ
ରୁଚିର ବଚନ ତାର
ଚତ୍ୱର-ତଳ-ପାଷାଣ ଲଭେ ତା'
ଚରଣର ଶୃଙ୍ଖଳର ।
ସେଇ ଅଙ୍ଗନ— ଗଗନେ ମିଶେ ତା'
ଶରୀରର ସଉରଭ
ସେଇ ପରିସରେ ଲୁଚିଯାଏ ତା'ର
ଚରଣ ନୂପୁର ରବ ।
ରୂପ-ଗୌରବ-ଲୀଳା
ପ୍ରିୟାର ମୋହର ଲଭି ହୋଇଥିବ
ଜୀବନ୍ତ ଗୃହ-ଶିଳା ।

## ବନ୍ଦିନୀ ଛାୟା

କାରାର କକ୍ଷେ ଶୟ୍ୟ ଛୁଏ ପ୍ରିୟା—
କଙ୍କଣ କଣ-କଣ
ବହୁଦୂର-ବାସୀ ଶୁଣିବ କେମନେ
କହ ମୁଁ ତା' ପ୍ରିୟଜନ !
ଶତକ୍ରୋଶ ଦୂରେ ଆଜ କେଉଁ ପୁରେ
ବନ୍ଦୀ ମୁଁ ପ୍ରିୟ ତାର
ପୋଛିବ କେମନେ କଳା ଆଖିରୁ ତା'
ଅଝୁଲ ଲୋତକ ଧାର !
ଏ କିବା ବିଡମ୍ବନା
ଦୁଇ ଦେଶେ ଦୁଇ ହୃଦ ରଖି କେ ଗୋ
ମିଳନ କରିଲା ମନା !

ମିଳନ-ବାଧାରେ  ସୁଧା ମୋର ସଙ୍ଗେ
ଦୂରେ ସ୍ୱପ୍ନପୁରେ
ମିଳନ ନ ପାଇ  କରେ ହାଇ ହାଇ
ପ୍ରିୟ ତା'ର ବହୁଦୂରେ ।
ଦେବତା କେ ଅଛ  ଦେବ ନିକି ଦେଖ
ମୋହର ନମସ୍କାର
ପ୍ରିୟତମ ପାଶେ  ଉଡ଼ି ମୁଁ ଯାଉଁଛି
ବାୟୁ-ବାହାନ ଧରି ।
ଗଣ୍ଡେ ଅଶ୍ରୁ-ଧାର,
ପୋଛୁ ମୁଁ ଦଉଁଛି;  ଗୋଟାଇ ରଖିଛି
କପାଳେ ବନ୍ଦୁ-ଝାଳ !

## ବନ୍ଦିନୀ ପ୍ରିୟା

ଧନ୍ୟ ମୁଁ ହେବ      ପ୍ରିୟା ଯହିଁ ଅଛି
ହେଲେ ତହିଁ ଶିଳା-ତଳ
ତା' ପଦ-ପରଶେ      ପାଷାଣେ ମୋ ହୃଦୟା
କଂପିବ ଥର ଥର ।
କରତଳ ତା'ର      ମୋର ଦେହେ ରଖି
ବସିଲେ ଶରମ ପାଇ
ପ୍ରତି ରେଣୁ ସେହି      ଶିଳାତଳେ କି ଗୋ
ଜୀବନ୍ତ ହେବ ନାହିଁ ?
ଭାଗ୍ୟ ସେ ମୋର କାହିଁ ?
ଜନ୍ମ ମୋହର      ଜୀବନ-ବରଷେ
ଅଶ୍ରୁ ତ୍ୟଜିବା ପାଇଁ ।

ଅଶ୍ରୁ ଯେ ଢେଳେ    ନଭ ନିଶା-ଶେଷେ
ଜାଣିବ କେମନେ ପ୍ରିୟା ?
ଯିବ ହେ କୋକିଳ ?    ଯିବ ହେ ମଳୟ ?
ଜଣାଇବ ମୋର ହୃଦ୍ୟା ?
ପ୍ରିୟା ମୋର ଠିଆ    ହୋଇଥିବ କଆ-
କଳିକା ଜୁଡ଼ାରେ ମାରି
କେହି ଜଣେ ଯାଇ    କହନା ବୁଝାଇ
ସୁଖୀ ହେବ ସୁକୁମାରୀ ।
କହିବ ତାହାରେ ଡାକି
'କଅଫୁଲ ଯାର    ପ୍ରିୟ ଗୋ, ତାହାର
ନିତ୍ୟ ସଜଳ ଆଖି ।'

କହୁଛ ହେ ପୁଣି 'ତୋର ଗୁଣ ଗୁଣି
ନ ସରଇ ତାର ଦିନ
ଯହୁଁ ବସେ ଖାଲି ତୋର ନାମ ଲେଖି
ଶୋକ କରେ ତାର କ୍ଷୀଣ ।
ତୋର ପରିଧେୟ ଦେହେ ଯାକୁ ଧରି
ଅସୀମ ସେ ସୁଖ ପାଏ
ତୋର ନାମ ପୁଣି ଖୋଳି ଦେଉଅଛୁ
ଶରୀରର ଠାଏ ଠାଏ ।
ଜାଣି ରଙ୍ଗ ବନ୍ଦନୀ
ଭୁଲେ ନାହିଁ କେବେ ପ୍ରିୟ ଗୋ ତୋହର
କି ଦିବସ କି ରଜନୀ ।'

## ଦୁଖ

ଜୁଆଫୁଲ-କଢ଼ି  କବରୀରୁ କାଢ଼ି
ଚୁମ୍ବିବ ପ୍ରିୟତମା
ଗୁରୁ ଆଖି ଧରି  ଛଳ ଛଳ କରି
ସଲିଳ ହୋଇବ ଜମା ।
ବଦନ ନଇଁବ  ନାସିକା ଫୁଲିବ
ଅଧର ଥରିବ ହେଲେ
ଜାବ ପୋଛୁ ଧୀରେ  ବଳୟ ବାଜିବ
ପ୍ରିୟାର ପ୍ରଳୟ ବେଳେ ।
ମୁହିଁ ତ ନ ଥିବ ତହିଁ
ଗୁରୁ ଶୋକେ ପ୍ରିୟା  ବାତାୟନ ପରେ
ସଧୀରେ ପଡ଼ିବ ନଇଁ ।

## ବନ୍ଦନା ପ୍ରିୟା

ମୋ ପାଇଁ ମଳୟ      ପ୍ରିୟାର କପାଳେ
ବୁଲାଇ ଦେବୁ ରେ ହାତ
ପୋଛିଦେବୁ ଧୀରେ      —ଭାଗ୍ୟ ତୋହର—
ଗଣ୍ଡ ଅଶ୍ରୁ-ସ୍ନାତ ।
କୃଷ୍ଣ ଚିକୁର      ବ୍ୟସ୍ତ ଆକୁଳ
ବକ୍ଷେ ପଡ଼ିଲେ ଖସି
ମୋ ଲାଗି ମଳୟ      ଗଢ଼ କବରୀ, ଥିର
ସଜାଡ଼ିବୁ ଜୁଡ଼ା ବସି ।
ଉପାୟ କି ଅଛି କହ,
ଭେଟିବାକୁ ହେବ      ସିନା ଏହ୍ୱପର
ଦୁହେଁଯାକ ଏ ବିରହ !

ଦୂରବାସୀ ପ୍ରିୟ— ଉରେ ନାଚ ବ୍ୟଥା
ତୁମ ପାଇଁ ବନ୍ଦନା
ଉପାୟ କଣ ଅଛି ନେଇଛି ତ ଆନ
ଶରୀର ତୁମର ଜାଣି ।
ରୂପ ତା'ରେ ଦିଅ ସ୍ନେହ ମାଗେ ପ୍ରିୟ
ଲକ୍ଷ ଯୋଜନ ଦୂରୁ
ଦିନେ ଦିନେ ଖାଲି ମଙ୍ଗଳ-ଧୂପ
ମୋ ନାମେ ଉଠୁ ସେ ପୂରୁ ।
ଉପଭୋଗ ପ୍ରଣୟର,
ତାହାଠାରୁ ବଳି ନାହିଁ ପ୍ରିୟତମ
ପବନ ମନୋହର ।



# ଆଷାଢ଼-ଅଭିସାର



୧

ଏଇ ଆସେ ଏଇ ସୁନ୍ଦରୀ, ଧୀର
ଗମନେ
ଭେଟିବାକୁ ପ୍ରିୟେ ତେଜି ତା'ର ନିଜ—
ଭବନେ ।

## ଧୂପ

କୃଷ୍ଣା ରଜନୀ, ଘନ ମେଘମାଳା
ଆକାଶେ
ତରଳ ତାରକା, ମେଘେ ବିଦ୍ୟୁତ୍
ପ୍ରକାଶେ ।

ନୀରବ ନଗର, ଜନହୀନ ରାଜ—
ସରଣୀ
ଘରେ ଘରେ ଦୀପ ନିଭାଇ ଦେଲେଣି
ଧରଣୀ ।

ଆର୍ଦ୍ର ଧରଣୀ, ଶୀକର-ଶୀତଳ
ପବନ
ଭେକ ଡାକି ଉଠେ 'ଜୀବନ ଆଜି ଗୋ,
ଜୀବନ ।'

ଭବନ-ପ୍ରଦୀପ ନିଭାଇ ଏକାଲେ
ପ୍ରେୟସୀ
ଏଇ ଆସେ ମୋର ଅଭିସାରେ ସମ-
ବୟସୀ ।

୨

ଗୃହୁ ମୁଖ ତାର ଦୂରୁ ଦେଖା ନାହିଁ
ଯାଉଛି
ଛାୟା ଖାଲି ତାର, ଶୁଭ ଅଭିସାର
କହୁଛି ।

ଏଇ ପାଖ ହେଲା, ନୂପୁର ଚରଣେ
ଶୁଭିଲା
କଦମ୍ବ-କୁସୁମ ଗଂଧ ମୋ ନାକେ
ଲାଗିଲା ।

ଆରେ ପଥ-ଘାସ ପ୍ରିୟା-ପଦ ପ୍ରାସ
ପାଇବ
କୋଇଁ ଦେବୁ ମଥା ପ୍ରିୟା ଯେବେ ପାଦ
ଥୋଇବ ।

ଶଶିର ତୋହର କୋମଳ କର ରେ
ସରଣୀ
ପ୍ରଥମେ ତା' ପଦ ଛୁଉଁଛି କଠିଣ
ଧରଣୀ ।



ଆଷାଢ଼-ପବନ ଲୋଭେ ଚୁମ୍ବନ
ପ୍ରିୟାରେ
ଦେବୁ ନାହିଁ; ଓଷ୍ଠୁ ଥର ଯେ ଉଠିବ
ହୃୟାରେ ।

ବିଦ୍ୟୁତ ତୁମେ ନିଭୃତେ ରହ
ଟିକିଏ
ଥରେ ଖାଲି ପ୍ରିୟା ଦେଇ ତା’ ଅଧର
ବଙ୍କ ହେ ।

*

ନୂପୁର ନୀରବ, ପାଖେ ଏବେ ଠିଆ
ପ୍ରେୟସୀ
ମୋ ଗାଲେ ସୁରଭି ନିଃଶ୍ୱାସ ତାର
ବରଷି ।

ଘର ଛାଡ଼ି ଏଇ ଘରପାଖେ ଠିଆ
ତରୁଣୀ
ପ୍ରେମ ଲାଗି ସେ’ତ ଆଷାଢ଼-ଆକାଶ
ଜରୁନ’ ।

## ଆଷାଢ଼ ଅଭିସାର

ଉପରେ ଭୀଷଣ ବାରିଦର ମାଳା
ଗରଜେ
ଉତ୍ତର ବାୟୁ ଉତ୍ତଳ ହୋଇ
ତରଜେ ।

ନଗର ନୀରବ, ନିର୍ଜନ ସାରା
ସରଣୀ
ଭେକ-ଝିଙ୍କାରୀ ଚଡ଼୍କାରେ ପୂରେ
ଧରଣୀ ।

ଏକାଳେ ଏକାକୀ ପଥ ପାଶେ ଜଣେ
ତରୁଣୀ
'ପ୍ରେମ ଲାଗି ସେ ତ ଆଷାଢ଼ ରଜନୀ
ଉଲୁନି' ।

୪

ବନ୍ଧୁ ହେ ମୋର, ଦେଖୁଛ କି ଘୋର
ରଜନୀ
ଏ ସମୟରେ କାହିଁ ଭବନ ଛାଡ଼ିଲ
ସଜନି !

ପ୍ରିୟ! ତନ୍ତୁ କହେ 'ପବ୍ବଣ ନ ସହେ
ପ୍ରିୟ ହେ
ତୁମର ବିରହ; ତକ୍ର ଲାଗଇ
ଗେହ ହେ ।

ନାହିଁ ଲାଗେ ମନ କେବେ ହେଲେ ଗୃହ-
କରମେ
ପ୍ରିୟତମ, ଖାଲି ତମ କଥା ଶୁଣେ
ମରମେ ।

ତେଣୁ ଆଜ ପ୍ରିୟ ଖୋଜିଲି ବାହାର-
ଧରଣୀ,
ତୁମର ଆଲୋକ ପାଇଁ ନେଲି ଶୁଭ୍ର-
ସରଣୀ ।

ବୁକେ ଅନ୍ଧାର, ଅନ୍ଧାର ପୁଣି
ବାହାରେ
ଆଲୋକ ମାଗିଲେ, ଫେରାଇ ଦେଇଛ
କାହାରେ ?

୫

ସୃଷ୍ଟିରେ ଆଜି ପ୍ରଳୟ ହେଉଛି
ରଚନା
ହୃଦୟେ ପ୍ରଳୟ ଭୋଗଇ ମଧୁର-
ବଚନା

ପ୍ରଳୟରେ ପୁଣି ସୃଷ୍ଟିର ହୁଏ
ପ୍ରକାଶ
ବିଦ୍ରୋହେ ହୁଏ ତରୁଣ-ଜୀବନ-
ବିକାଶ ।

ଘର ଛାଡ଼ି ତେଣୁ ଏ ତରୁଣୀ ଆଜି
ଆସିଲା
ପ୍ରାଣ-ଭୋଗ ପାଇଁ ବିଦ୍ରୋହୀ ହେଲା
ସୁଶୀଳା ।

ନୀଡ଼େ ନ ପାଏ ଯା' ବିହଗ ତା' ବୁଲି
ଖୋଜଇ
ନୀଡ଼ ଛାଡ଼ି ତେଣୁ ସୀମାହୀନ ମେଘେ
ହଜଇ ।

ତେଣ୍ ପ୍ରିୟା ମୋର କୁସୁମ-କୋମଳା
ତରୁଣୀ
ନ-ପାଇବା-ଧନ ଖୋଜି ଏ ରଜନୀ
ଜଗୁନି'।

୨

'କ୍ଷବା ମାଗ ମତେ କହ ଥରେ ମଧୁ-
ବଚନା'
ପ୍ରିୟା କହେ 'ପ୍ରିୟ, ସ୍ନେହ ଖାଲି ମୋର
ଯାଚନା ।'

ମତେ ଗୃହିଁ ଥରେ ଭଲ ପାଅ ବୋଲି
କହ ହେ
ଅଶ୍ରୁ ପାଉ ତରୁଣୀ ତା' ଗୁରୁ-
ବିରହେ ।'

କହୁ କହୁ ପ୍ରିୟା ସହସା ମଉନ
ହୋଇଲା
ବିଶାଳ ନୟନୁ ଉଷ୍ଣ ଲୋତକ
ବହିଲା ।

## ଅଷାଢ଼ ଅଭିସାର

ତାର ଗୃହୁ ମୁଖ ଦୁଆରାରେ ଧୀରେ
ଚଳିଲି
କାନ୍ଦନା ପ୍ରିୟେ ବୋଲି ଭର୍ତ୍ସନେ
କହିଲି ।

'ଯାହା କିଛି ମୋର ଅଛି, ସବୁ ଦେବି
ତୁମରେ
ନିଖିଳ ହୃଦୟ ଢାଳିବି ଏ ଚର-
କମଳେ ।

ଯାଅ ସଖି ଏବେ ଘରେ ଯାଅ ଫେରି
ତରୁଣୀ
ନାସ୍ୱ ଲାଗି ନୁହେ ଜାଣ ଗୋ ଏ ସ୍ୱଜ-
ସରଣୀ ।

ଆକାଶ-ବହାସ୍ୱ ମୁହୁଁ ଯାଏ ଦୂର-
ଗଗନେ
ତୁମେ ଥାଅ ତୁମ ନୀଡ଼ ରଚ ନିଜ-
ଭବନେ ।

ବେଳେ ବେଳେ ଯେବେ ସଖୀ ଖୋଜେ ଉଦଠ
ପରାଣ
ଦୂରସ୍ଥ ମତେ ପ୍ରେୟସୀ କରବ
ଧିଆନ ।'

୨

ବାରଦ ବାଜଲ ଗମ୍ଭୀରେ ଆଷାଢ଼-
ଆକାଶେ
ସୁପ୍ତ-ନଗରୀ ହସଇ ଦାମିନୀ
ବିକାଶେ ।

ଭେକ ଝିଁକାରୀ ଚିତ୍‌କାରେ ପୂରେ
ଧରଣୀ
ଭୀଷଣ, ବିଜନ, ଅନ୍ଧାର ରାଜ-
ସରଣୀ ।

ପ୍ରିୟାର ଭବନ ଦୂରେ ଦେଖାଯାଏ
ଅଳପେ
ପ୍ରାବୃଟବାୟୁ ସନ୍‌ ସନ୍‌ ଝିବା
ଝଳପେ ।

ସ୍ବୃହେଁ ନିଜ ନୀଡ଼େ ମତେ ଗୃହେଁ ପୁଣି
ପ୍ରେୟସୀ
ଧରେ ମୋର କର କୋମଳ-ପରଶେ
କରଷି ।

ମତେ ଗୃହଁ କହେ 'ପ୍ରିୟତମ ଏକା
କର ହେ'
ଭାବନା କି ଖାଲି ଶମିବ ମୋର ଏ
ବିରହେ ?

ସେ ନୀଡ଼ ଛାଡ଼ିଛି ତମ ନୀଡ଼-ସୁଖ
ପାଇଁକି
ମତେ ରଖିବାକୁ ପନ୍ଥ ଭ୍ରମର
ନାହିଁ କି ?

କହୁ ଏହା ପ୍ରିୟା ପରଶେ କଢ଼ଣୁ
କୋମଳେ
ମୋ ମୁଖ ଲଗିଲା ସୁନ୍ଦରୀ-ମୁଖ-
କମଳେ ।

## ଧୂପ

ଆଷାଢ଼-ପବନ ସନ୍ ସନ୍ ବନ୍ଧୁ
କହିଲା,
'ହେ ଜଳ ତରୁଣୀ ! ଦୁଃଖ ଯେ ସାଥୀ
ପାଇଲୁ' ।



# ଏଇ ସହକାର ତଳେ



ଏଇ ସହକାର ତଳେ
ସେଦନ ପ୍ରିୟାର କର-କଂକଣ ଭିଡ଼ିଥିଲା ମୋର ଗଳେ ।

ଚାନ୍ଦନୀ ରାତି ଉଠିଥିଲା ମାତି
ମଳୟ ପରଶ ପାଇ
ବନପକ୍ଷୀ ଦୂରେ କରୁଣ ମଧୁରେ
ଯାଉଥିଲା କିବା ଗାଇ ।
ଜ୍ୟୋସ୍ନା ଓ ଛାୟା ରଚିଥିଲା ମାୟା-
ଜାଲ ଏ ତରୁତଳେ
ସହଚରୀ ମୋର ପ୍ରଣୟ-ବିଭୋର
ଭିଡ଼ିଥିଲା ମୋର ଗଳେ
ଏଇ ସହକାର ତଳେ ।

## ଧୂପ

ନଗରେ ପ୍ରଦୀପ    ନିଭି ଆସୁଥିଲା
ନିଶୀଥ-ନିଦ୍ରା ପାଇଁ
ପ୍ରାନ୍ତର ଭରି    ଝିଂକାର କରି
ଉଠୁଥିଲା ସାଇଁ ସାଇଁ ।
ଶଂକିତେ ଗୋପୀ    ଥର ଥର କରି
ଚଉଦିଗେ ଚାହୁଁଥାଏ
ପ୍ରିୟତର ମୁହଁ    ସମ୍ଭବଣି ମୁଖୁ
ଅଧର-ମଦ୍ୟ ପାଏ ।
ଭୟେ, ଭୟେ, ଡରଡରେ
ଏଇ ସମ୍ଭକାର ଛଳେ ।

ଦୁହେଁ ଦୁଇଠାରେ    ଘନେ ମିଶିବାରେ
ପ୍ରାଣ ମନ ଧରି ଚେଷ୍ଟା
କ୍ଷଣିକ ଟେକେ କାରେ    ପ୍ରାଣ ବଞ୍ଚିବାରେ
ଏଥିଲାଗି ଭାରି ନିଷ୍ଠା ।
ସକଳ ଜଗତ    ଦୂର ଓ ନିକଟ
ପାସୋରି ସେ ମହାକ୍ଷଣେ
ଶୁଣୁଥାଇ ମନ୍ଦ୍ର:—    ସଙ୍ଗୀତ, ପ୍ରିୟା
କଂକଣ କଣ-କଣେ ।
ବାଜେ ଯେବେ ତାର କରେ
ଏଇ ସମ୍ଭକାର ଛଳେ ।

# ଏଇ ସହକାର ତଳେ

ପିଆଇ ମଦିରା    ଥରେ ସେ ଅଧୀରା
    ଚମକିଲା ମୋର ବକ୍ଷେ
ବାହୁପାଶ ତା'ର    ଶିଥିଳିତ କରି
    ଚୁହିଁଲା ମୋହର ଚକ୍ଷେ ।
ମୋ ନୟନେ ଚୁହିଁ    ଅଧର ଥରାଇ
    କହିଲା ମୋ ଆଡ଼େ ଚୁହିଁ
ତମ ଲାଗି ଯେହୁ    କଳଂକ ବହେ
    ସତେ ତାକୁ ଭୁଲ ଯାଅ ?
ଉତ୍ତରେ ବାହୁ ଭିଡ଼ିଲି ତାହାର ଗଳେ
ଏଇ ସହକାର ତଳେ ।

ସହକାର ତଳ-    ବାୟୁ ଉଚ୍ଛଳ
    ହୋଇଗଲା ପ୍ରିୟା ଗଂଧେ
ଶିଥିଳ ଚିକୁର    ଚୁମ୍ବନାକୁଳ
    ପଡ଼ିଲା ରୂପସୀ ସ୍କନ୍ଧେ ।
ନିଶୀଥ ଜ୍ୟୋତ୍ସ୍ନା    ଧୀରେ କଲା ମନା
    ପ୍ରାନ୍ତରେ ରହିବାକୁ
ମଳୟ କହିଲା    ମଦିରା ସରିଲା ?
    ଯାଅ ତେବେ ଶୋଇବାକୁ ।
    ମିଶିବୁଁ ତ କେତେ ଥରେ
    ଏଇ ସହକାର ତଳେ ।



ଅନ୍ଧକାର ରାତି ଆଜ କେତେ ଥର
ଦେଖିଲୁ ଆମ୍ଭ ତ୍ରାସ ?
ଜ୍ୟୋତ୍ସ୍ନା ନିଶାରେ ଦେଖିଲୁ କି ଆଜ
ଉଡ଼ିବାର ପ୍ରିୟା ବାସ ?
ମିଳନାହୁଁ ଆଜ, ମିଶି ନାହୁଁ ବାହୁ
ରୋମାଞ୍ଚ କରି ଜାତ
ଦୂରେଁ ଦୂରେ ଦୂରେ; ଭୟ କରୁଛୁ
ସମାଜ ଦଣ୍ଡ-ଘାତ ।
ଭେଟି ନାହୁଁ ତାରା ପରେ
ଏଇ ଅନ୍ଧକାର ରାତେ ।

ଜ୍ୟୋତ୍ସ୍ନା ରଜନୀ କେତେ ଥିବ ଯାନ୍ତୁ
ସେଦନ୍ ଟୋପର ଶିରେ
ଫୁଲ୍ଲବ ତୋର ଜଡ଼ିଥିବ ଥର
କେତେ ବାର ପିକ ଶିରେ
ଚୂତ ! ତୋର ତଳେ ପୁଣି କେତେ କରେ
କଂକଣ ଥିବ ବାଜି
ଚୁମ୍ବନ-ରାଗେ ହୋଇଥିବ କେତେ-
ନାଗରିକା ଓଠ ମାଜି ।
ବାହୁ ଉଡ଼ିଥିବ ଗଳେ
ଏଇ ଅନ୍ଧକାର ରାତେ ।

କନ୍ଦ ଚୂଡ଼ କନ୍ଦ    ସେପରି କି ଆଜି
  ଦେଖିଛୁ କାହାରେ ଚକ୍ଷେ
ଗୁଚ୍ଛ ସୁରମ୍ୟ    ସେପରି ପ୍ରଣୟ
  ଗଭୀର କାହାର ବକ୍ଷେ ?
ପ୍ରିୟା ସମ ମୋର    ପୀରତି ବିଭୋର
  ଦେଖିଛୁ କାହାରେ ଆଜି ?
ନିବଦ୍ଧେ ସେପରି    କନ୍ଦ ପ୍ରିୟେ ଧରି
  ବାନ୍ଧିଛୁ କିଏ ବାହୁ ?
    ମିଶିଅଛୁ ପ୍ରାଣତଳେ
    ଏଇ ସନ୍ଧ୍ୟାର ଛଳେ ।



ସାକ୍ଷୀ ତୁ କହ        ମୋହର ପ୍ରଣୟ
ସମାନ ଜଗତେ ନାହିଁ
ମୋର ପ୍ରିୟା ସର        ନାହିଁ ସୁନ୍ଦରୀ
ନାହିଁ ଓ ପ୍ରଣୟ-ଦାୟୀ ।
କ୍ଷଣକର ସୁଖେ        ଦରିଦ୍ର ମୁହିଁ
ସମ୍ରାଟ ହୋଇ ଉଠେ
କେହ୍ନ ପାଇ ନାହିଁ  ଦଣ୍ଡେ ଯା' ଦେଲା
ପ୍ରିୟା ମଣେ ଓଠ-ପୁଟେ ।
ସେ କଥା କହ ତୁ ଥରେ
ଏଇ  ସେହ୍ନ ତୋର ତଳେ ।
ଭୁଲିଯିବ ମୁହିଁ,   ପ୍ରିୟା ନ ଦେଖିବା-
ଦୁଃଖ ଏ ଜୀବନରେ ।



# ବିରହୀ



ଦୂରେ ଦୂରେ ଦୂରେ
ପରାଣ-ପ୍ରିୟା ରହିଲା ଯାଇ
କାହାର ଅନ୍ତଃପୁରେ ।
ଜୀବନ ସାରା ଅଗ୍ନି ଜଳେ
ବିରହୀର ଏ ବକ୍ଷତଳେ
କପୋତ ପରି ଚିତ୍ତ ମୋର ଝୁରେ
ଦୂରେ ଦୂରେ ଦୂରେ ।

୯୫

ଏକା ଏକା ଏକା
ମୋ ଲୁହ ମୋର    ହାତରେ ପୋଛୁ
ଭୁଇଁରେ କାଟେ ରେଖା ।
ତା' ଛଡ଼ା ମୋର ପ୍ରିୟା ଯେ ନାହିଁ
ନୟନ ମୋର ପୋଛିବାପାଇଁ
ସେ ପ୍ରିୟା ସାଥେ ନାହିଁ ଯେ ହୁଏ ଦେଖା
ଏକା ଏକା ଏକା ।

ପ୍ରିୟା ପ୍ରିୟା ପ୍ରିୟା
ଯହିଁ ମୁଁ ଯାଏ,    ଯହିଁ ମୁଁ ଥାଏ
ଡାକଇ ମୋର ହିୟା ।
ପ୍ରିୟା ଯେ ମୋର ସୁଦୂର ଭୂମେ
ଆଜ କା ଓଠ ଘୃଣାରେ ଚୁମେ
କୁଣ୍ଠିତରେ କରଇ ଓଠ-ପିଆ
ପ୍ରିୟା ପ୍ରିୟା ପ୍ରିୟା ।

ସଖି ସଖି ସଖି
ତୁମର ଲଗି ଆଜ କା ପ୍ରେମ
ପାରୁ ନାହିଁ ମୁଁ ରଖି ।
ତୁମେ ତ ଗଲ ଅନ୍ୟ ସାଥେ
ମୋ କାଳ ମୁହିଁ କିପର କାଟେ
କଲ ଯେ ମତେ ନଷ୍ଟ-ନୀଡ଼ ପଖୀ
ସଖି ସଖି ସଖି ।

ଝର ଝର ଝର
ଜୀବନ ମୋର ଭୋଗିବ ସିନା
ଦଗ୍ଧ ବୃକ୍ଷ ପର ।
ଯେ ଯାହା ପ୍ରିୟ ଚାହିଲେ ନେଇ
ମୋ ପ୍ରିୟତମେ କାହାରେ ଦେଇ
ଏକଲା ବୁଲେ ଦିବସ ଶର୍ବରୀ
ଝର ଝର ଝର ।

ଧୂପ

କାହ କହ କହ
ପ୍ରଣୟ ଦେଇ        ବିରହ କିଆଁ
ଭୋଗିଲି ଅହରହ ।
ସ୍ୱପ୍ନା ତୋର ବନ୍ଧୁର ନାହିଁ
କାହାର ସୁଖ ଥୋଇଲ କାହିଁ
ଜୀବନ ମୋର        କଲୁ ଦୁର୍ବିଷହ
କହ କହ କହ ।



# ବସନ୍ତ-ବିରହୀ



ବସନ୍ତେ ଆଜ ପ୍ରିୟା ମୋର ନାହିଁ ପ୍ରିୟା
ବହୁଦୂରେ ସେ ତ ବନ୍ଦିନୀ ଘରକନ୍ୟା ।
ମଳୟ ପବନ ଡେବେ ଅକାରଣ
ବୋଲ୍ କାଁଦେ ମୋର ହୃଦୟା
ବନ୍ଦିନୀ ଯଦ ପ୍ରିୟା ।

ମନ୍ଦାର ତେବେ ଫୁଟିଲା କିପାଇଁ ଆଜି
ତା ଘେନି କାହାର କବରୀ ମୁଁ ଦେବି ସାଜି?
ତୁଳନା ତାହାର        ସଙ୍ଗେ କାହାର
ଅଧର ହୋଇବ ଆଜି
ଫୁଟିଲା କିପାଁଇ ବନେ ମନ୍ଦାରରାଜି ?

କନକ-ଚମ୍ପା ବନେ କିପାଁ ବିକଶିଲା
ବାସ ତୁଳିବାକୁ ନାହିଁ ପାଖେ ଗୁରୁଶୀଳା
ଯୋଜନଗନ୍ଧା        କା' ପୁରେ ବନ୍ଧା
ସୁରଭିର ଗୃହଶିଳା
କନକ-ଚମ୍ପା ଏଥି କିପାଁ ବିକଶିଲା ?

ବନେ ଏତେ ଫୁଲ ଫୁଟିଲା କିପାଇଁ କହ
ପ୍ରାଣ ଯଦି ଯାଏଁ ଭେଟି ଭେଟି ଏ ବିରହ ।
ପ୍ରିୟା ଯଦି ଦୂରେ        ମୁହିଁ ଏଥି ଝୁରେ
ମୁଖ ତାର ଅହରହ
ବନେ ଏତେ ଫୁଲ ଫୁଟିଲା କିପାଇଁ କହ ।

### ବସନ୍ତ-ବିରହୀ

ପ୍ରିୟା ଥିଲେ ପାଖେ ଚଟୁଳ ତା ମୁଖ ଧରି
ଫୁଲ୍ଲ ବକୁଳେ କବରୀ ଦଅଁଛ ଭରି
ବକୁଳରୁ ମଧୁ         ଗ୍ରହି କରି ବନ୍ଧୁ
        ଚଖାଁଛି ଆଦର କରି
ପ୍ରିୟା ଥିଲେ ପାଖେ ଚଟୁଳ ତା' ମୁଖ ଧରି ।

କୁଂକୁମ ଆଜ ପଢ଼ି କି ରହିଁଥା ଭାଲେ
ବିଂଦୁ ରଚନା କରି ମୁଁ ଦଅଁଛ ଭାଲେ
ବକ୍ଷରେ ତାର         ଚନ୍ଦ ଛଆର
        କରଁଛି ମୁଁ ସେଥି ଗାରେ
କୁଂକୁମ ଆଜ ପଢ଼ି କି ରହିଁଥା ଭାଲେ ?

କେତକୀ-କଳିକା ଜୁଡ଼ାରେ ଦଅଁଛ ମାରି
ଚାହାଁନ୍ତା ପ୍ରେୟସୀ ସୁଖେ ମତେ ଲାଜ ଛାଡ଼ି
କହିଁଛି ମୁଁ ହସି         ଆଜି ମୁଖ-ଶଶୀ
        ସଜାଇବ ଭଲ କରି ।
କେତକୀ ଚେଣୁ ମୁଁ ଜୁଡ଼ାରେ ଦେଲି ଗୋ ମାରି ।

## ଧୂପ

ପ୍ରିୟା କାହିଁ ଆଜି, ବସନ୍ତେ କାହିଁ ପ୍ରିୟା
ବନ୍ଦନୀ ଦୂରେ ପର ପୁରେ-ଘାର ହିୟା
ଡେବେ ମଧୁମାସ, ଖାଲି ପରିହାସ
ବୋଲି କହେ ମୋର ହିୟା
ପ୍ରିୟା ନାହିଁ ପରା, ପ୍ରିୟା ନାହିଁ ପାଶେ ପ୍ରିୟା ।

ମଧୁମାସ ଦେଇ ବଧୂ ପାଶେ ନାହିଁ ଦେଲା
ସ୍ୱପ୍ନାର ଏ କି ନିଷ୍ଠୁର ଅବହେଳା
କାରେଂସାଥେ ଧରି ମନଭରି କରି
ଅବିର କରିବ ଖେଳା
ମଧୁମାସ ଦେଇ ବଧୂ ପାଶେ ନାହିଁ ଦେଲା ।

ସକଳେ ମାତିଲେ ପ୍ରାଣ-ପୁରି ଅନୁରାଗେ
ନିଖିଳ ବିଶ୍ୱେ ମିଳନ-ଗନ୍ଧ ଜାଗେ
ମୁହିଁ ଏକା ଖାଲି ପ୍ରଣୟ ଭିଖାରି
ବିଫଳେ ଭିକ୍ଷା ମାଗେ
ସକଳେ ମାତିଲେ ପ୍ରାଣ-ପୁରି ଅନୁରାଗେ ।

ପ୍ରିୟା ଯହିଁ ଅଛି ବସନ୍ତ ଆସିଥିବ
ବିରହରେ ସେ ତ ଡାକୁଥିବ ଶିବ ଶିବ
ମଳୟ ସମୀର ନୟନର ନୀର
ବନ୍ଧୁ ଗୁରୁ ହେଉଥିବ
ବିରହରେ ସେ ତ ଡାକୁଥିବ ଶିବ ଶିବ ।

ଦୁହେଁ ଦୁଇ ଦେଶେ, ବ୍ୟର୍ଥ ଏ ମଧୁ ମାସ
ପ୍ରଣୟ ପାଇଁକି ନ ମିଳିଲା ଅବକାଶ
ବିଧାତା କନ୍ଦ ତ କିଆଁ ଅବିରତ
ଜଗତେ ଏ ପରିହାସ
ପ୍ରଣୟ ବନ୍ଧନେ ଗଲା ଭୁଲି ମଧୁ ମାସ ।



# ପ୍ରଣୟୀ



ବକ୍ଷଭରା ଏ ପ୍ରଣୟ ମୁଁ କାରେ ଦେବି ଗୋ,
ବଡ଼ ଉଚ୍ଛାଟ କରେ ମତେ ଦିନ ରାତି,
ଅଶ୍ରୁ ଢଳାଇ, କାହାର ଚରଣ ସେବି ଗୋ!
ସକଳ ଲୋମ ମୋ ପୁଲକିବ ଡାକି 'ସାଥୀ'।

## ପ୍ରଣୟୀ

ପିଆଲା ଭରୁର ଉଚ୍ଛୁଳେ ମମ ଜୀବନ,
କାହା କର-ପୁଟେ ଢାଳିଦେବ ସଖା-ସୋହାଗେ,
କାହାରେ ପାଇ ମୁଁ ଭୁଲିଯିବ ଜନ୍ମ-ମରଣ,
ଜୀବନ ଲାଗିବ ମଧୁର, ଗଭୀର-ସରାଗେ ।

ବସନ୍ତ ଆଜି ମଧୁର କରିଛି ଧରଣୀ
ମଳୟ ମତ୍ତ, ଚୁମ୍ବି କୁସୁମ-ସୁରଭି ।
ଆମ୍ର-ବକୁଳ-ମଦାଳସୀ ପିକ-ରମଣୀ
ପ୍ରଣୟୀ ପାଇଁକି ଖୁଣ୍ଡୁଛି ମହୁଆ ପରବୀ ।

ବାତାୟନ ଦେଇ ଗନ୍ଧ-ବଧୂର ଦକ୍ଷିଣା
ପରଶି ଅଙ୍ଗ, ଥରାଏ ନଖିଳ ଗୁଚ୍ଛ,
ଅନ୍ତର-ପୁରେ ଖୋଜଇ ତରୁଣୀ ନବୀନା
ଏ ମଧୁର କାଳେ ଲୁବ୍ଧ-ଚିତ୍ତର ସାଥୀ ।

ତରୁଣୀ ଜୀବନ ଝରଇ ପର ଗୋ ଲୋତକେ
ଆଦ୍ୟ-ମଳୟେ କାନ୍ଦେ ମୋ ବୁକୁ-ଷୋଡ଼ଶୀ,
ସେ ଗୁହେଁ ଜୀବନ ବିକିଦେବ କଥା ପଦକେ
କହିବ ଯେ ଖାଲି "ତୁମରି ମୁଁ ସମବୟସି !"

## ଧୂପ

ବସନ୍ତେ ଆଜି କେ ଅଛ ଆସ ଗୋ ନାଗର,
ପ୍ରଣୟ-ବଧୂର ତରୁଣୀର ନେବ ସୁଆଗ,
ତବ ଅବଗାହେ ଧନ୍ୟ ହେଉ ଏ ସାଗର,
ଭ୍ରମର ଶ୍ରବଣେ ଧନ୍ୟ ହେଉ ତା ବେହାଗ ।

× × × ×

ସନ୍ଧ୍ୟା ଯେ ହେଲା, ନଇଲେ ତ କେହି ପ୍ରଣୟୀ,
କ୍ଳାନ୍ତ-କଣ୍ଠ କୋକିଳ ଚଳଇ ନୀଡ଼େ,
ଦିଗନ୍ତେ ଦିଗ-ମଧୁର ମଳୟ ଚଳଇ,
କେଳି-ସାଥୀ ଘେନି ହଂସ ଫେରଇ ତୀରେ ।

ଅଗଣ-ସନ୍ଧ୍ୟା ଯାପିଛି ଏକାକୀ ଦୀନ ମୁଁ,
କେହି ନ ଆସିଛି କଣ୍ଠେ ମୋ ବାହୁ ଭିଡ଼ନେ,
ମରଣ ନକି ଗୋ ସୁଖର ଏ ଘୋର- ସରମୁଁ ?
ସାଥୀ-ସଙ୍ଗାତ କାହାର ନାହିଁ ଏ ଭୁବନେ ?

ଜଣ ଜଣ କରି ବରି ମୁଁ ଆଣିଛି ଦେବତା
ଜଣ ଜଣ କରି କହୁଛି ବୁକୁରେ ଥିଲା ଯା',
ଜଣକର ହେଲେ ନ ହେଲା ମୋଠାରେ ମମତା,
ସକଳେ ଠେଲିଲେ ଦୀନ ଦରିଦ୍ର ପରି ଯା !

## ପ୍ରଣୟୀ

କେତେଥର ଅଦ୍ଧା ବୁଝାଇଲ୍ ନିଜେ ନିଜରେ,
"ଅପଦାର୍ଥର ବାନ୍ଧବ କାହୁଁ ଜଗତେ !"
ଗୁମର ଚଳପେ ବୁଲୁ-ବଧୂ ଅଭିମାନରେ—
"କପାଁ ତେବେ ବିଧି ଦେଲା ଏ ବିଳାପ ରକତେ ?"

ପରିହାସ ସେ ଗୋ ! ବଡ଼ ପରିହାସୀ ଦଇବ,
ଲୁହ ବର୍ଷି ଲୁହ ପୋଛୁବାର ନାହିଁ ବିଧାନ,
ପତିତର କପାଁ ଦେବ-ଭୋଗ ଆଶା ହୋଇବ,
ନିଜ ଇଚ୍ଛାମତେ ବିଧାତାର ସବୁ ଭିଆଣ !

ସବୁ ଭିଆଣରୁ ପୀରତି-ଭିଆଣ ଜଟିଳ,
ଝଲପି ବସିଲେ ବୋଧିବାର ଲୋକ ନ ଥାଏ,
କଠିନ ଅଦ୍ଧୁର ବାନ୍ଧବା ଲୁହ ଆଖିର,
ଯେତେ ପୋଛ ପୁଣି, ସେତିକି ଗୋ ବୁଲୁବଥାଏ ।

× × × ×

ସକଳ ସନ୍ଧ୍ୟା ପରି ମୁଁ ଆଜି ଗୋ ଝଲପେ
ବସନ୍ତେ ଏଇ ନବଜାତ-ଘାସ-ଆସନେ,
ଅଙ୍ଗ ଗୁନ୍ଥେ ଏ କାନ୍ତ-କୋମଳ ତଳପେ
ଆରେକ ଦେହର ସରସ ନିବିଡ଼ ମିଳନେ ।

## ଧୂପ

ବନ୍ଧୁ କେ ଗୃହଁ, ଅଭିସାର କର ଏଠାରେ,
ବାସକ-ସଜ୍ଜା ରହିବ ମୁଁ ସାରା ଯାମିନୀ,
ଆସ ଯେ ଆସିବ, କବରୀ-କୁସୁମ-ପସରାରେ
ଉଦ୍‌ବେଳ କରି ହୃଦୟ ଏ, ବର-କାମିନୀ ।

ତରୁଣ ଆସିଲେ କଂକଣଧ୍ୱନି ଶୁଣିବ,
ତରୁଣୀ ଆସିଲେ ନୂପୁର ବାଜିବ ଅଦୂରେ,
ତରୁଣ ଆସିଲେ ଗୀତେ ଗୁଣ ତାର ଗୁଣିବ,
ତରୁଣୀ ଆସିଲେ ତୋଳି ନେବ ତାକୁ ବୁକୁରେ ।

ଯେ ଆସିବ ଆସୁ, ନିଃଶେଷ କରି ପାନ
ପିଆଇବ ତାକୁ ସରସ ଜୀବନ ମଦିରା,
ସାଥୀ ଖୋଜେ ଆଜି ପ୍ରାଣ ମୋର, ଏ ମୋ ଗାନ
ଉଚ୍ଛ୍ୱାସ ଉଠେ ରସର ତଟିନୀ ଗଭୀରା ।



# ବିରହ



ମିଳନର କାଳେ    ଯେତେ ପାଖେ ଆସ
ଥାଏ ଦେହ ବ୍ୟବଧାନ
ବିରହରେ ପ୍ରିୟେ    ହୋଇଅଛୁ ଆଜ
ଶରୀରର ଅବସାନ ।

ଶୋଣିତର ସ୍ରୋତେ    ସାରି ଦେହେ ଆଜ
ତୁମର ପରଶ ପ୍ରିୟା
ଦେହମୟ ଆଜି    ହୋଇଅଛ ତୁମେ
ଆବରି ରହିଛ ହିୟା ।

## ସ୍ୱପ୍ନ

ବାହାରେ ଭିତରେ ସବୁଆଡ଼େ ତମେ
ଅଭିନବ ଅନୁଭବ
ନିଜ ଦେହେ ଯାକ ପାଉଛି ବିରହୀ
ମଧୁର ପରଶ ତବ ।

ଯହିଁ ଯାଏ ମୁହିଁ ଯହିଁ ଅବା ଥାଏ
ମୋର ଏ ପରାଣ ତଳେ
ବୀଣା-ଧାର ଛଳେ ମଧୁଗୀତ ସମ
ତୁମର ସ୍ମୃତି ଚଳେ ।

ସବୁକାମ ତଳେ ତୁମ କଥା ଏଣି
ବାଜୁଥାଏ ରହି ରହି
ଆଖି ଯାହା ଦେଖୁ ମନ ଭାବୁଥାଏ
ଦନେ ଗୋ କି ଥିଲି କହି ।

ବିରହ-ବିଧୁର ବିରହ ମଧୁର
ଭାବେ ମୋ' ବିରହୀ ହିୟା
ବିରହ ଯେ ଦେଲ ଯୋଗ ଭୋଗିବାକୁ
ଦେହ ସାରା ମୋର ପ୍ରିୟା ।

# ବର୍ଷା-ବିରହ



ଆଷାଢ଼ୀ ପ୍ରାତେ କୃଷ୍ଣ ଅକାଶ ତଳେ
ପସ୍ୱଣେ ଯେତେ ଦରଙ୍ଗ ଉଠେ ଫୁଟି
ପାଉନ୍ତୁ କାହ୍ନୁ ପବଣ-ପ୍ରିୟ ମମ
ଯାହାର କାନେ କହୁବ ମୁଖ ଫୁଟି ।

ସରମ ନା'କି          ଲାଗିବ ମତେ ଭଲେ
ସକଳ ଆଗେ କହୁବ ମୋର କଥା
କାହାର ଅବା          ଗରଜ ଅଛୁ କିସ
ଶୁଣିବ ବସି ମୋହର ଦୁଃଖ-କଥା ।

ପ୍ରିୟ ଯେ ସିନା     ତା'ପାଶେ କହୁ ଆସେ
ପ୍ରାଣର ଯେତେ କ୍ଷୁଦ୍ର ଅଳି ଦୁଳି
ପର କି ତାହା     ବୁଝିବେ କେବେ ହେଲେ
କହୁବେ—'ଅହେ, କି କହ ନାଁ ବୁଝି !'

ମରମ କଥା          ମରମୀ ସିନା ଜାଣେ
ମରମୀ ମୋର ସାଥୀରେ ନାହିଁ ମୋର
କେସନେ କହ          କାଟିବ ଏଇ କାଳ
ଆସାର-ଓଦା ମେଦୁର-ମୁଦର ।

୨

ମେଘୁଆ ଦିନେ     ବୃଷ୍ଟି-ମୁଖର କାଳେ
ମନଟା କିପାଁ ହୁଅଇ ଛଳ ଛଳ
ପରାଣ ଖୋଜେ          ଆହୁଇ ଏକ ପ୍ରାଣ
ହସ୍ତ ଲେଞ୍ଚେ ଆଉ କା' କରତଳ ।

ଏପରି ଏକ ଆଷାଢ଼ ବୃଷ୍ଟି ଭରା—
ସକାଳେ ପ୍ରାଣ ଉଠିଲା ଯେଣୁ ଥରି
ମନ୍ଦାକାନ୍ତେ ଗାଇଲେ କାଳିଦାସ
ପ୍ରୋଷିତଭର୍ତ୍ତୃ ପ୍ରିୟାରେ ଅନୁସରି ।

ଦରଂଜ ସେଇ ବାଜଇ ପ୍ରାଣେ ମମ
ଆଜି ଯେ ଏଇ ବର୍ଷା-ମୁଖର ପ୍ରାତେ
କେଉଁ ପ୍ରିୟାରେ ଦେବି ମୁଁ ସନ୍ଦେଶ
ଜଳଦ ସମ କେଉଁ ବା ଦୂତ ହାତେ ?

ମୋ ପାଇଁ କେହି ପ୍ରିୟା କି ନାହିଁ ବସି
କରଜ-ଗାରେ ବିରହ-ସୁଖ ଗଣି
ଦରଜ ମୋର ଶୁଣିବ କିଏ କହ
ଉଠିଲା ଯଦ ହୃଦୟୁ ରଣରଣି ।

୩

ବୃଷ୍ଟି ଧାରା ପଡ଼ଇ ଅବିରତ
ଦୂର୍ବାଦଳ ପଡ଼ଇ ନଇଁ ଲାଜେ
ବର୍ଷା, ଘାସ ଆଲିଙ୍ଗନ ଦେଖି
ପରାଣେ ମମ ବ୍ୟଥାର ବୀଣା ବାଜେ ।

ଶୀକର-କଣା ଛୁଇଁଲା ଗବାକ୍ଷରେ
କପାଳେ ମୋର ମୁକ୍ତାସମ ଲାଗେ
ପାଖରେ ମୋର ନାହିଁ ଯେ ପ୍ରିୟତମା
ଦେଖିବ ତାହା ପରମ ଅନୁରାଗେ ।

ଜଳଦ ଡାକେ ଶୁଣିଛୁ ଏଇ ଦନେ
ଫୁଟଇ ଜଠି କଦମ୍ବ-ଫୁଲ
ଆଷାଢ଼େ ମୋର ବ୍ୟଥିତ ନିଃଶ୍ୱାସେ
ଗଣ୍ଡ କା'ର ହେବନା' ବ୍ୟାକୁଳ ?

ସାଥୀ ତ ନାହିଁ ଆଜି ଏ ଆଷାଢ଼ୀ ପ୍ରାତ
କଟିବ ସିନା ବ୍ୟଥିତ ନିଃଶ୍ୱାସେ
ଦରଜ ମୋର ହୃଦୟେ ଉଠି ମରୁ
ଗୃହେଁ ମୁଁ ରହେ ଆଷାଢ଼-ଆକାଶେ ।



# ମୌନ—ବିଦାୟ



ବିଦାୟ-ବେଳ ଯେବେ ଆସିଲା ସଖି
ରହିଲ କିପାଁ ତୁମି; ନୟନ ରଖି
ଧରଣୀ ତଳେ । ନଖେ କାଟିଲ ଗାର,
ଚିବୁକ ଓଦା କଲା ନୟନ-ଧାର ।

‘ବିଦାୟ ଦିଅ ମତେ ଯାଉଛି ମୁହିଁ’
କିପାଇଁ ନ କହିଲ ଭଲ ସୁମୁହିଁ
ମଉନ ରହି ଯାହା କହିଛ କଥା
ହିୟରେ ତବ ଚିର ଦେଇଛି ବଥା ।

‘ଯାଉଛି’ ବୋଲି କହି ପାରିଲି ନାହିଁ
ଯେହୁ, ତାହାରେ ମନୁଁ କେବେହେଁ ଭୁଲାଇ,
ଯାଇ ସେ ନ ଯାଇଛି; ରହିଛି ବୁକେ
ବିଦାୟ ଦେଇ ନିତି ଦେଖେ ତା’ ମୁଖେ !







# ମନେ କି ଥାଏ ?



ଯଦ୍ଧ ମୁଁ ଥାଏ ବା ଯଦ୍ଧ ମୁଁ ଯାଏ
କାନେ ବାଜେ ତବ 'ମନେ କି ଥାଏ'
ହେ ପ୍ରିୟତମ
ସ୍ୱପନେ ଶୁଣିବା ମରଣ ସମ !

ଓଠ ଧରି ସ୍ନେହ ତରଳ ହାତେ
ନୟନ ମିଶାଇ ନୟନ ସାଥେ
ପଚାରିବାର
ପାଶୋର ଜୀବନେ ଯିବ କାହାର ?

ପଚାରିବା ସେଇ 'ମନରେ ଥାଏ' ?
ବାହୁ-ଲତା ରଖି ଏ ମୋର କାୟେ
ନୀରବ କରି
ନିଦାଘ ରଜନୀ ଜ୍ୟୋତ୍ସ୍ନା ସରି ।

## ମନେ କି ଥାଏ

ଗୋଟିଏ କଥାରେ କେତେ ସେ କଥା
କହୁ ବିରହୀର ହୃଦୟ ବ୍ୟଥା
ଜାଣ କି ପ୍ରିୟେ
ସ୍ମରିଲେ ପରାଣେ ଅମିୟ ଦିଏ ।

ସେଇ ଓଠ-ଧର ଚଟୁଳ କରେ
ଅଙ୍ଗୁଳି ଲାଜ-ଆଦରେ ଥରେ
ପଚାରିବା ସେ
'ମନରେ କି ଥାଏ' ଗୁହାଁ ମୋ ଆଗେ ।

ସବୁ ମନେ ପଡ଼େ ସବୁ ଗୋ ପ୍ରିୟା
ଏମାନ କି କେବେ ଭୁଲେ ଗୋ ହିୟା
ଭୁଲି କି ପାରେ
ଯେ ରାଣୀର ଏତେ ଦୟା ମୋଠାରେ ?

ମନରେ ଥାଅ ଗୋ, ମନରେ ଥାଅ
ଛମେ ପୁଣି ମନୁ ପାଶୋର ଯାଅ ?
ହେ ପ୍ରିୟତମ
ମିଶି ଯେ ଯାଇଛ ଚିତ୍ତେ ମମ ।

# ପ୍ରଣୟ-ଗର୍ବ



ସକଳେ କରନ୍ତି ଗର୍ବ ପ୍ରିୟ-ପ୍ରିୟା ଯେନି
ମୋ ଆଗେ । ତା' ଶୁଣି ପ୍ରିୟେ ମୋର ଆଖି ବେନି
ଛଳ ଛଳ ହୋଇ ଆସେ ଗୁରୁ ଅପମାନେ ।
ମୋର କି ଗୋ ପ୍ରିୟ ନାହିଁ ? ସ୍ନେହ-ଅଭିମାନେ
ଚଞ୍ଚଳ-ଶ୍ରୀକରେ ଧରି ଓଠ ମୋର ସ୍ନେହେ
ସନ୍ଧି ଧୀରେ କଣ୍ଟକିତ କରି ମୋର ଦେହେ,
ମତେ କେ କି କହୁ ନାହିଁ, "କ୍ଷମା କର ମତେ;
ଶୁଣ ମୋର ରାଗ ଛାଡ଼, କଥା କହ ସତେ" ?
ମତେ କେ କି ବରାନନା ବ୍ରୀଡ଼ାନତ ମୁଖେ
ଧୀରେ ତୋଳି; ନୟନେ ମୋ ଦେଇ ମହାସୁଖ,
କର୍ଣ୍ଣମୂଳେ ଲଜ୍ଜାବତୀ ଓଠ ରଖି ତାର
ପଚାରନ 'ଭଲ ପାଅ' ବୋଲି ବାର ବାର ?

ତୁମେ ତାର ସାକ୍ଷୀ ପ୍ରିୟେ ! ଦୂରେ ବହୁଦୂରେ
ଅଛ ଯାଇ ଗଣ୍ଡବନେ ବନ୍ଦନୀ କା' ପୁରେ,
ପ୍ରିୟ-ଅଭିମାନୀ ଏଇ ଇତରଙ୍କ ଆଗେ
କେମନ୍ତେ ଦେଖାଇ ଗର୍ବେ ମୋର ଅନୁରାଗେ ?
କେମନ୍ତେ ଜଗତ ଆଗେ କହିବି ଶୁଣାଇ
ତବ-ମମ ପ୍ରେମ ସମ ନାହିଁ ପ୍ରେମ ନାହିଁ !
କେମନ୍ତେ ଜନତା ଆଗେ କହେ ଗର୍ବ କରି
ମୋ ପାଇଁ ସୁଦୂରେ କାନ୍ଦେ ପରମା ସୁନ୍ଦରୀ
ଗୃହ କର୍ମ ତେଜି ତାର, ବାତାୟନ ପାଶେ
ପ୍ରାଣର ପ୍ରାର୍ଥନା ଲଭେ ଦେଇ ମୋହ ଆଶେ !

ଭାବେ ପୁଣି, ଗର୍ବ ପଛେ କରନ୍ତୁ ଇତର,
ଭାବନ୍ତୁ ପଛକେ ମତେ ଅଙ୍କଛଡ଼ା ନର
ତୁମରି ମୋହର ମଧ୍ୟେ ତୁମ ମୋର କଥା
ରହୁ ପ୍ରିୟେ; ନ ଜାଣୁ ତା' ଇତର ଜନତା ।
ସଂସାର ତା' ଗର୍ବ ଦେଇ କରୁ ତା' ବିସ୍ତର
ତୁମ ବକ୍ଷତଳେ ମୋର ସକଳ ସଂସାର ।



# ଘାସ-ସୁନ୍ଦରୀ



ପଥିକ, ଯେ ପଥେ ଗଲ
ସେହି ପଥେ ଜାଣ ପ୍ରଣୟିନୀ ଏକ
ରଚୁଥାଇ ଅଭିସାର ।

ଚରଣ-ପରଶେ ତାର,
କଠିଣ-ସରଣୀ-ପାଷାଣ ଅଙ୍ଗେ
ଉଠୁଥାଇ ଶୀତ୍କାର ।

ତା' ଜୁଡ଼ା-ଗନ୍ଧ ପାଇ
କ୍ଷୁଧିତ ମଳୟ ଭୋଜନ ସରବେ
ଭୁଞ୍ଜ ଯେ ପାରଇ ନାହିଁ ।



ଶରୀର-ଆଲୋକ ଛାର
ଘୋଡ଼ାଇ ନ ପାରି ଲଜ୍ଜିତ ହୁଏ
ରଜନୀ ଅନ୍ଧକାର ।

ଶଂକତେ ଯେବେ ଆସେ
ସାରୀ-ପଥେ ପରୀ ସେ ପ୍ରିୟତମାର
ରୂପ ଓ ଗନ୍ଧ ଭାସେ ।

ପଥ-ପାଶ ସହକାର
ପ୍ରିୟା ଆଉ ପ୍ରିୟ ମିଳନ ପାଇଁକି
ଦିଏ ତା' ଅନ୍ଧକାର ।

ଏଇ ସହକାର ତଳେ
ଏଇ ପଥ ପାଶେ ଭିଡ଼ିଥିଲା ବାହୁ
ପ୍ରିୟା ତା' ପ୍ରିୟର ଗଳେ ।

ତଳେ ଏଇ ପଥ-ଘାସ
ଉପରେ ତାରକା ମନେ ରଖିଛନ୍ତି
ସେ ପ୍ରିୟ-ପ୍ରିୟାର ରସ ।

ପ୍ରଣୟୀ କି କଥା ଜାଣ ?
ତେବେ କି ପଥିକ ଏ ଗୁଲବା-ପଥେ
ନ କରିବ ସମ୍ମାନ ?

# ଧୂଳି

ଏ ପଥର ରେଣୁ ତଳେ,
ମନେ ରଖ ଏକ ରୂପସୀ ପ୍ରିୟାର
ପ୍ରଣୟ ନିତ୍ୟ ଥରେ ।

ଏଇ ସନ୍ଧକାର ତଳେ
ମନେ ରଖ ଏକ ସୁନ୍ଦରୀ ଦେଲା
ପ୍ରାଣ ତା'ର ପ୍ରିୟ କରେ ।

ଏ ସରଣୀ-ରେଣୁରାଶି
ଖୋଜୁଛନ୍ତି ଆଜି, କାହିଁ ଗଲା କାହିଁ
ସେ ଦିନ ମଉକାଶୀ ?

ପଥିକ ଏ ସବୁ ଜାଣି
ଗଲାବେଳେ ଏଥି, ଧରିବ ନାହିଁ କି
ଚରଣ-ବସନ ଟାଣି ?

ସେ ବେଳା ପ୍ରଣୟୀ ଆଉ
ମିଳିବେ ନା' ଏଥି, ମିଳାଇବେ ନାହିଁ
ଶାବଡ଼େ ଦୁଇଟି ବାହୁ ।

ଦୁହେଁ ଦୁଇ ଦେଶେ ରହି
ଦୁହିଁଙ୍କ କପୋଳେ ବିରହର ଜଳ
ନିତ୍ୟ ଯାଉଛି ବହି ।

ତେଣୁ ହେ ପଥିକ ଜନେ,
ସମ୍ମାନ କର, ସମ୍ମାନ କର
ବିରହିତ ସେ ପ୍ରଣୟେ ।

ତୀଥ କରିଛ କି ହେ ?
ତୀର୍ଥ ଟି ତାହ, ମାନବର ହିୟା
ଯହିଁ ଦିଏ ଆଉ ନିଏ ।

ଏ ପଥ ତୀର୍ଥ ଜାଣ,
ଏଇ ପଥେ ପଶି ମିଶି ଯାଉଥିଲେ
ଚୁମ୍ବନେ ଦୁଇ ପ୍ରାଣ !

ଏଇ ପଥ ରେଣୁ ପରେ,
ପଥିକ ଜାଣ କି, ପ୍ରେମିକର ଇଚ୍ଛା
ଯେତେବେ ତା' ଚିତା ଜଳେ !

ତେଣୁ ହେ ପଥିକ ଜନେ,
ସମ୍ମାନ କର ଏ ପଥେ, ଯା' ତଳେ
ପ୍ରେମ ଓ ବିରହ ବନ୍ଧେ ।



## ଜଣେ ମତେ ଭଲ ପାଏ



ଦୁର୍ଦ୍ଦିନେ ପ୍ରାଣ ଆଉ ଡର ନାହିଁ ପାଏ
ଜାଣିଲିଣି ଯେଣୁ ଜଣେ କେହି ଭଲ ପାଏ ।
ଥାଉ ସେ ସୁଦୂରେ ଲକ୍ଷ ଯୋଜନ ପାରେ
ବନ୍ଦିନୀ କାରାଗୃହର ଅନ୍ଧକାରେ
ବାଜେ ମୋର ଏଇ ହୃଦୟର ଏକଠାଏ
କେ ଜାଣି କାହିଁକି ପ୍ରିୟତମ ସମ
ମତେ ସେ ଗୋ ଭଲ ପାଏ ।

ଗୃହିଣୀ ସେ; ତାର ଜଞ୍ଜାଳ ଶତ ଶତ
ମାନିବାକୁ ହୁଏ ବହୁଜନ-ମନୋରଥ ।
ତଥାପି ପାଇଲେ କ୍ଷଣକର ଅବସର
ଘରଣୀର ଘୋର ଜଂଜାଳୁ ଦେବସର
ନୀର ଢେଙ୍କ ଥରେ ପୋଛୁଦଏ ମୋହ ଲାଗି
ଦେବତାଠୁଁ ନିଏ ମୋର ମଂଗଳ ମାଗି
ମୋହ କଥା ଭାବି ଶୟନେ ନିଦ୍ରା ଯାଏ
କେ ଜାଣେ କାହିଁକି ବିଶାଳ ଜଗତେ
ମତେ ଏତେ ଭଲ ପାଏ !

## ଜଣେ ମତେ ଭଲ ପାଏ

ସେଇ ମଂଗଳେ ବିଶ୍ୱାସ ମୋର ବଢ଼
ସେଇ ସ୍ନେହ ଆଜ ନାହିଁ ପରିସରର ।
ସେଇ ପ୍ରେମ ମତେ ଜୀବନ ଦେଇଛି ଆଜ
ବୀର ସମ ବାହ୍ନିଯିବ ଦୁର୍ଦ୍ଦିନସଜ୍ଜ
ଗଗନେ ମୋହର ହେଲେ ଘୋର ଘନଘଟା
ବଦନ ତାହାର ହେବ ବିଦ୍ୟୁତ ଛଟା,
ସଂଗ୍ରାମେ ଯଦି ଶିଥିଳ ହୁଏ ଏ କର
ଦୂରୁ ସେ ଡାକଇ 'ମତେ ଛୁଇଁ, ଅସି ଧର'
ସ୍ନେହ ତାର ମତେ ଦେଲା ନୂଆ ଅବତାର
ପରାଣ ମୋ' କହେ, ସବୁ ମୁଁ କରିବ
ହେବାକୁ ଯୋଗ୍ୟ ତାର ।

ଦୁର୍ଦ୍ଦିନେ ତେଣୁ ଆଜ ଡର ନାହିଁ ପାଏ
ଜାଣିଲିଣି ଠିକେ ଯେଣୁ ଜଣେ ଭଲ ପାଏ ।
ସକଳ କରମେ ପଛେ ମୋର ସେ ଗୋ ରହି
ଇଂଗିତ ଦିଏ ସମରେ ହେବାକୁ ଜୟୀ ।
ସଚୀବ ସେ ମୋର, ଜନନୀ, ଭଗିନୀ, ପ୍ରିୟା
ସବୁ ରୂପେ, ସବୁ ଭାବେ ସେ ଜାଣିଲା ହିୟା ।
ତାହାର କଥା ମୁଁ ଭାବୁଥାଏ, ଗାଉଥାଏ
ଲାଜ ନାହିଁ ମୋର, ଡର ନାହିଁ ମୋର;
ସେ ଯେ ମତେ ଭଲ ପାଏ ।

## ସ୍ମୃତି



ବହୁତ ଦିନ ହେଲା ତୁମର କଥା କିମ୍ବା
ପଡ଼ିନି' ମନେ
ବ୍ୟସ୍ତ ଥିଲି ସବୁ ବିଗତ ଦିନଯାକ
ସକଳ କ୍ଷଣେ

ବିରାମ ଅବସରେ ଆଜି ଏ ପ୍ରଭାତରେ
ଅଳସେ ବସି
ଜୀବନ-କଥା ଭାବୁ ପଡ଼ିଲା ମନେ ତବ
ବଦନ-ଶଶୀ ।

ତୁମରି ସ୍ୱର ଆଜ ପ୍ରିୟ ତ ମୋର ନାହିଁ
ଜୀବନେ ସଙ୍ଗି
ନୟନ ଲୁହେ ଭିଏ ପ୍ରଣୟ ହୃଦେ ମୋର
ଯାଇଛି ରଙ୍ଗି ?

ଆଜ୍ କେ ମୋର ପାଇଁ  ନିଜରେ ଭୁଲ୍ ମତେ
ଦେଉଛୁ ସ୍ନେହ ?
କଳଙ୍କ ମାଥେ ବନ୍ଧୁ  ହସି କେ କହ ମତେ
ଡାକୁଛୁ 'ପ୍ରିୟ' !

କେଣ୍ଠୁ ଗୋ ଦେଇ ନାହୁଁ  ତୁମର ସବ ପ୍ରେମ
ଜାଣ ଏ ଧ୍ୱନେ
ଯଦବା ସଖା-ସଖୀ  ମେଲ ଏ ଜୀବନରେ
ଙ୍କୁଡ଼ନ ଦନେ ।

ତୁମରେ କପଟ ମୁଁ  ଭୁଲ୍‌ବ କହ ସଙ୍ଗ
ଭୁଲ୍‌ବ କହ
ସକଳ ସୁଖ ମେଲେ  ପ୍ରିୟ ଗୋ ବାଧେ ମତେ
ତୁମ ବିରହ ।

ଆଜି ଏ ପ୍ରଭାତରେ  ଚରମ ଅବସରେ
ପଡୁଛ ମନେ
ସକଳ ଅବସରେ  ପରାଣ-ପ୍ରିୟ ତମେ
ପଡ ଗୋ ମନେ ।

ଆଜ ତ ଦେଖା ନାହି ଜୀବନେ ହେବ ଗଣି
ଜୀବନ ଥାଉ
ସ୍ମୃତିରେ ନିଧି କରି ଧରଣୀ ପରେ ଶେଷ
ଜୀବନ ଯାଉ ।

ତୁମେ କି ପ୍ରିୟ ମତେ ଭାବ ଗୋ ବେଳେ ବେଳେ
ମୋହରି ପରି
ଅତୀତ କଥା ଭାବି ବିଶାଳ ଦୁଇ ଆଖି
ଲୋତକ ଭରି ?

ପହଲୁଁ କହୁଥିଲ 'ନିରତେ ତମେ ମନେ
ପଡ଼ୁ ଯେ ଥାଅ'
ସେ ବାଣୀ ଭରସାରେ ଲଭଇ ଆପେ ଆପେ
ବିରହ-ଦାହ ।

ଜାଣେ ମୁଁ ଜାଣେ ସଖି ଭୁଲି ନ ଥିବ ମତେ
ନୁହ ସେପରି
ଜାଣେ ମୁଁ ଏ ଜଗତେ ପ୍ରେମିକା ନାହିଁ ମୋର
ପ୍ରିୟାର ସରି ।



# ପାଟଶୋର-ପ୍ରଣୟ



ଜୀବନେ ଯାକୁ ଭଲ ପାଇଲି ବାରେ
ପରତେ ନାହିଁ ଆସେ
ନିଜକୁ ନିଜ ଭ୍ରଷେ
କହୁବି ଯଦ ଅଜ୍ଞ ଭୁଲିଛୁ ଢାରେ
ଜୀବନେ ଯାକୁ ଭଲ ପାଇଲି ବାରେ ।

ବିବେକ କହେ ଡାକି ଆହେ ରସିକ
ଥରେ କି ଭଲ ପାଇ
ଭୁଲିବା ଶୋଭ୍ର ପାଇ
ନିଠୁର-ପ୍ରାଣ ତବ, ପ୍ରଣୟୁ ଧିକ
ବିବେକ କହେ ଡାକି ଆହେ ରସିକ ।

ଏ ଗୁଢ ତଳେ ଯାଏ ପରାଣ ମନ
ପାଇ ଏ ଜଲ୍ଦଗୁଣା
ପୁଣି ପ୍ରେମ, ପୃରୁଣା—
ହେଲା କେମନ୍ତେ ସେଇ କଥା ସୁମର;
ଏ ଗୁଢ ତଳେ ଯାଏ ପରାଣ ମନ ।

## ଧୂପ

କେମନ୍ତେ କିପାଇଁ ବା ଭୁଲିଲି ତାରେ,
ନିଜେ ତ ନାହିଁ ଜାଣେ
କେମନ୍ତେ ମୋର ପ୍ରାଣେ
ପଡ଼ିଲା ବାରିଧାରା ପ୍ରେମ-ଶିଖାରେ
କେମନ୍ତେ କିପରି ବା ଭୁଲିଲି ତାରେ

ମନେ ତ ଅଛି ସେଇ ଲୀଳା ଅଗର
ପରାଣ ଦିଅ ଦେଇ
ସକଳ ପଥ ଦେଇ;
ମୋ ପାଇଁ କାଟିବାର ଜାଣି ଜାଗର
ମନେ ତ ଅଛି ସେଇ ଲୀଳା ଅଗର ।

ନୟନେ ନୟନେ ସେ କହିବା କଥା
ନିରତ ମୁଖେ ଚାହିଁ
ଇଙ୍ଗିତ ପୂରେ ନାହିଁ
ଟିକିଏ ଆଡ଼ ହେଲେ ଲାଗଇ ବଥା
ନୟନେ ନୟନେ ସେ କହିବା କଥା ।

## ପାଶୋର ପ୍ରଣୟ

ସବୁ ତ ଅଛୁ ମନେ ପ୍ରିୟ ଗୋ ମମ
ସେ ଦୀପ ଆଜ୍ ଜଳେ
ନାହିଁ ଏ ପ୍ରାଣ ତଳେ
କପାଇଁ କର ପ୍ରାଣେ ଫଗୁଣ ସମ ।
ସବୁ ତ ଅଛୁ ମନେ ପ୍ରିୟ ଗୋ ମମ ।

ଭାବବ ଆନ ଅବା ନୟନ ଢ଼ାଳ
ନେଲଣି କାଣି ମଠେ
ରୁହିଁଛୁ ମୋର ପଥେ
କୁଟୀରେ ତା'ର ପ୍ରେମ-ଜାଗର ଜାଳ
ଭାବବ ଅବା ଆନ ନୟନ ଢାଳ ।

ନାହିଁ ଗୋ ନାହିଁ ସଖି ସେପର କେହୁ
ମୋ ପଥେ ମୁଁ ଏକାକୀ
ନାହିଁ ତ କେହୁ ସାଥୀ
ଆପଣା କରିବ ଯେ ପ୍ରଣୟ ଦେଇ
ନାହିଁ ଗୋ ନାହିଁ ସଖି ହେପର କେହୁ ।

ତଥାପି ହାୟ ସଖି ଯାଏ ନା ମନ
ତବ ସେ ପ୍ରେମ ପାଶେ
ସେ-ଦିନ-ସୁଖ ଆଶେ
ତୃଷିବା ପାଇଁ ଚନ୍ଦ୍ରା-ପୀୟୂଷ-କଣ
ତଥାପି ହାୟ ସଖି ଯାଏ ନା ମନ ।

ଭାବିବ ନାହିଁ ପ୍ରିୟେ ନିଠୁର ମତେ
ଯତନ ଯେବେ କରି
ପାରିଲି ନାହିଁ ଧରି
ପ୍ରଣୟ ତବ ହୃଦେ; କି ଦୋଷ ସତେ
ଭାବିବ ନାହିଁ ପ୍ରିୟେ ନିଠୁର ମତେ !

ପ୍ରଣୟ ହାୟ ସଖି ଚପଳା ଅଛି
ବତାସି ପରି ଆସେ
ନିଖିଳ-ପ୍ରାଣ ଗ୍ରାସେ
ଫେରିଲା ବେଳେ ଯାଏ ନିଭାଇ ବତୀ;
ପ୍ରଣୟ ହାୟ ସଖି ଚପଳ ଅଛି ।

ତୁମର ଦୀପ-ଶିଖା ଲଭିଛୁ ପ୍ରାଣେ
ବରାଗୋ ପ୍ରାଣ-ବଧୂ
ନ ପିଏ ତବ ମଧୁ
ନିରତ ଆନ ଫୁଲେ ଯିବାରେ ଟାଣେ
ତୁମର ଦୀପ-ଶିଖା ଲଭିଛୁ ପ୍ରାଣେ ।

ଜୀବନେ ଥିଲେ ସଖି ଖୋଜିବ ଫୁଲ
ପ୍ରଣୟ-ମଧୁ ବିନା
ପରାଣ-ବଧୂ ସିନା
କଠିନ-ଉପବାସେ ହେବ ଆକୁଳ
ଜୀବନ ଥିଲେ ସଖି ଖୋଜିବ ଫୁଲ ।

ତେବେ ଗୋ ପ୍ରିୟେ ମତେ ଦିଅ ମେଲାଣି
ପାଶୋର-ପ୍ରେମେ ରାଇ
କି ସୁଖ ଲେଉଟାଇ
ଭୁଲିଛୁ ମୁଁ ତ, ମତେ ଭୁଲ ଗୋ ରାଣି,
ତେବେ ଗୋ ପ୍ରିୟେ ମତେ ଦିଅ ମେଲାଣି ।



# ପ୍ରେମର ପରିମାପ



ପ୍ରେମ କି ଥରେ ଆସି, ଥରକେ ହୁଏ ଶେଷ,
ଜଣକୁ ଦେଲେ ସଁପି, ନ ରହେ ଅବଶେଷ ?
ପ୍ରଥମ ଭେଟ ସାଥେ ସରେ କି ସଂଚୟ,
ଆଜ୍ କି ଥରେ ବୁକୁ ନ ହୁଏ ରସମୟ ?

ପଛେ ଯେ ଆସେ ତାର ଆଖିରେ ନୀର ଭରି,
ସେ କି ଗୋ ଦେଖିଯିବ ଶୁଖିଲା ହୃଦ-ଝର ?
ପ୍ରଥମ ଯଦ ନିଏ, ଦ୍ୱିତୀୟ ନେବ ନିକ,
ବିଶାଳ ହୃଦ-ପୁରେ ସାଜେ କି ଏକ ସଖୀ ?

ଏକଇ ଫାଲ୍‌ଗୁନେ ଲକ୍ଷ ଫୁଲ ଫୁଟେ,
ଭ୍ରମର ଗୋଟିକରୁ ଗୋଟିକୁ ଚୁମ୍ବି ଛୁଟେ,
ଗୋଟିଏ ପ୍ରାଣେ ତାର କୋଟିଏ ସଖୀ-ଡାକ,
କାହାଁକୁ ଦୂରେ ରଖି ଯିବ ସେ କାହା ପାଖ ?

## ପ୍ରେମର ପରମାସ

ସବୁରି ଓଠେ ଓଠେ ଲଗାଏ ମୁଖ ତାର,
ସବୁରି ପ୍ରାଣ-ପୁଟେ ଢାଳଇ ଯା ଦେବାର ।
ଜଣେ କି ଖାଲି ନେବ ଜୀବନ ସୁଖ-ପାନେ,
ଆଜ କି ସବୁ ଯିବେ ମଜନ-ଅପମାନେ ?

× × ×

ଜୀବନ ପଥ ପରେ ଅନେକ ସାଥୀ ଡାକ,
କାହାକୁ ଦୂରେ ଠେଲି ଯିବି ମୁଁ କାହା ପାଖ ?
ଜଣକ ଉପହାର ରଖିଲି ବୁକେ ତୋଳି
କ୍ଷୁଦ୍ର ଅଧର ତା ସାଗ୍ରହି ମୁଖେ ବୋଲି ।

ଆରେକ ଯଦି ଆସେ, ଧରି ତା ଉପହାର
କି ଦୋଷେ ତାକୁ କହ ରୋଧିବ ମୁଁ ଦୁଆର ?
ଦୁଆର ପଥ ପରେ ସରଳା ଆଖି ଲୁହ
ପୋଛୁବ କାହା ନାମେ ଫାଟପଣରେ କୁହ ?

ସବୁରି ଆଖି-ଲୁହ ସମାନ ନକି ଭବେ,
ସକଳ ବୁକୁ ଏକା ବେଦନା-ଗଭରବେ ?
କି ଦାବୀ ତେବେ କହ ଏ ବୁକେ ଜଣକର,
ଅନେକ ପାଇଁ ଯଦି ଅଛୁ ଗୋ ଉପଗୁର ?

ଏକଇ ଜୀବନେ ଗୋ ଅନେକ ତାକ ଆସେ,
କାହାକୁ ଫେରାଇବ, ଡାକିବ କାହେ ପାଶେ ?
ପ୍ରଥମା ଦେଖା ଦେଲା ପଥର ଧୂଳି ପରେ
ଧୂଳିର ଗୃହ ପାତୁଁ କିଶୋର ବୟସରେ,
ଧୂଳିର ସଂସାରେ ସେ ଥିଲା ଶ୍ରେଷ୍ଠ ରାଣୀ.
ଦେଇଛୁ ସେହ୍ନଦନୁ ଆସନ ତାର ଟାଣି
ଏ ବୁକେ । ଯହୁଁ ଯାଏ ସେ କହେ 'ମତେ ନିଅ,
ସକଳ ଖେଳରଣେ ମତେ ମୋ ଭାଗ ଦିଅ ।'
ଦ୍ୱିତୀୟା ଦେଲା ଦେଖା, ସକାଳ-ଯଉବନେ
ଲୁମାସି ଅଭିଳାଷା; ଗୋଲାପ , ରୂପବନେ
ତରୁଣୀ ନ ଡାକୁ; ମୁଁ ଅର୍ଘ୍ୟ ଉପହାର
ଦେଇ ମାଗିଲି ତାର ମୋ ଘରେ ଅଭିସାର ।
ଆସିଛୁ ସେ ରୂପସୀ ତା ପାଇଁ ଆୟୋଜନ
କରିବ ନାକି ? ପାତି ନ ଦେବ ମୁଁ ଆସନ ?
ତୃତୀୟା ପୁଣି ଅଛୁ, ନୁହେ ସେ ରୂପବତୀ,
ତଥାପି ସ୍ୱତ କାଟେ ମୋ ପାଇଁ ଜାଳି ବତୀ;
ଭିକ୍ଷା କିଛୁ ନାହିଁ; ଦେବାରେ ସୁଖ ତାର,
ମୋହର ସୁଖ ପାଇଁ ତା ନେହେ ଲକ୍ଷଧାର ।
ଆସନ ମାଗେ ନା ସେ, ତଥାପି ଆୟୋଜନ;
ମୋ ସେବା ନ ମାଗୁଁ ସେ; ମୁଁ ତାର ପରିଜନ ।

## ପ୍ରେମର ପରିମାପ

କେତେ ଗୋ ଏଇପରି ପ୍ରଣୟ-ଭିଖାରିଣୀ
ଭିକ୍ଷା କରି ମୋର ପ୍ରାଣକୁ ନେଲେ କିଣି ।
ସବୁରି ଦାବୀ ଅଛି, ଫେରି ଗୋ ଯିବେ କିଏଁ,
ପ୍ରଣୟ ସରେ କି ଗୋ, ସରେ କି ଅନୁକମ୍ପା ?

ଅତଳ ଜଳଧି ଏ ରହିଛି କୂଳ ଭରି,
ବହିବ ବୁକୁପରେ ଲକ୍ଷ କୋଟି ତରୀ,
ଲକ୍ଷ କୋଟି ଜୀବ ପାରିବେ ଅବଗାହି,
କି ଲଭେ କାରେ କିପାଁ କରିବ ନାହିଁ ନାହି !

ସଖୀ ସଜନୀ ଯେତେ ମିଳିବେ ମୋ ଦୁଆରେ,
ସକଳେ ହେବେ ତୋଷ ମୋ ପ୍ରୀତି ଉପଗୃତେ ।

# ଭଲ ପାଅ ?



ଭଲ ପାଅ ? ଭଲ ପାଅ ?
କେତେ ପଚାରିଲ୍ ଢେରେ ବରବଧୂ
କପାଇଁ ମଜନ ଥାଅ ?

ଭୁବନ ବୁଲି ମୁଁ ତୁମ ପାଶେ ବସେ ଆସି
କହୁବ ତୁମରେ ଏ ପରାଣ-କଥାରାଶି
ସେ ସକଳ କଥା ଗୋଟିଏ କଥାରେ ସରେ
ପଚାରି ବସିଲେ କଣ୍ଠ ମୋ ଶୁଖେ,
ନାଖିଲ ମୋ ଦୃଷ୍ଟି ଥରେ;
ଏକ ସେ ପ୍ରଶ୍ନ—ଭଲ ପାଅ, ଭଲ ପାଅ
ବରବଧୂ ଛମେ ନାଷ୍ଟୁର ଏତେ
କପାଇଁ ମଜନ ଥାଅ ?

ନାହିଁ କର ଯଦ    ମୃତ୍ୟୁ ଖୋଜିବ ସଙ୍ଗ
ନୀଡ଼ ଖେଳ ନଭେ    ଉଡ଼ିବ ପାଗଳ ପକ୍ଷୀ
ଜୀବନ-ପାତ୍ର    କ୍ଷଣକେ ଶୁଖିବ ରସ
ଚିରକାଳ ପାଇଁ କ୍ଷୁଦ୍ର କରିବ
ମତେ ଏହି ଅପଯଶ,
ଜାଣିକି ଏ ସବୁ    ମଜନ ତୁମେ ହେ ଥାଅ
ବରବଧୂ ଏତେ ପଚୁରୁଁ ପୂଜାସ୍ମି
ଭଲ ପାଅ ? ଭଲ ପାଅ ?

ପୁରୁଷ ମୁଁ ସଖି    ସମରରୁ ଆସେ ଫେରି
ଜୟ-ଗୌରବେ    ବଜାଇ ବିଜୟ-ଭେରି
ଦେଖିବ ବୋଲି ସେ    କଜଳ-ଆଖିରେ ସୁଖ
ମୋ ଗରବେ କ୍ଷଣେ ପୂରି ଉଠିବାର
ସେ ସ୍ନେହ କନକ ମୁଖ
ସେ ମୁଖ ଦେଖିଲେ    ଏ ବୁକେ ଲିଭଇ ଦାହ;
ତେଣୁ ମୁଁ ପଚୁରେ ଏତେ ବରବଧୂ
ଭଲ ପାଅ ? ଭଲ ପାଅ ?

ଯହିଁ ଯାଏ ମୁହିଁ    ସେ ମୁଖ ପଡ଼ଇ ମନେ
ସେ ଆଖି-ଯୁଗଳ    ଜଳୁଥାଇ ପ୍ରତିକ୍ଷଣେ;
ଭାବୁଥାଇ ଖାଲି    କୁଟୀରେ ଆସିଲି ଛାଡ଼ି
ଯାହାରେ, ସେ କି ମୋ' ଜପ୍ୟ ଶୁଣିବାକୁ
ରହିଅଛି କାନ ପାରି ?
ତୁମ ଲାଗି ଖାଲି,    ତୁମ ଲାଗି ଅବଗାହ
ଜଗତ-ଯୁଦ୍ଧେ; ତେଣୁ ମୁଁ ପଶୁଚରେ
ଭଲ ପାଅ ? ଭଲ ପାଅ ?

ବୁଝି ପାରୁ ନାହିଁ    ପୂଜାରୀର ଆରାଧନା
କାହିଁକି ହେ ଦେବ ?    ପଡ଼ୁ-ନାହିଁ କି ହେ ଜଣା,
ଉତ୍କଣ୍ଠା ମୋର    ପ୍ରଣୟର ବରବଧୂ ?
ଅଯାଚିତେ ତେଣୁ ଡାକି ପାରୁ ନାହିଁ
ପରାଣ ପ୍ରଣୟ-ମଧୁ ?
ତେଣୁ କି ମଉନେ ଥାଅ ?
ଯେତେ ପଶୁରଲେ ପ୍ରସ୍ତରମୟୀ,
ଭଲ ପାଅ ? ଭଲ ପାଅ ?

# ଭଲ ପାଅ ?

ହେ ପାଷାଣି, ତୁମେ   ଦେଖି କି ପାରୁଛ ହୃଦୟ,
ଜାଣି କି ପାରୁଛ   ସଘଣେ ଜଳେ କି ନିଆଁ ?
ପୁରୁଷ ରକ୍ତ   ତରଳ ଅଗ୍ନି ପରି
ଜାଳିଦିଏ ମତେ; ବୈଶାଖୀ ବନେ
କାନନ ଅଗ୍ନି ସରି ।
ପ୍ରଣୟର ବାରିବାହ
ଅକାଣ୍ଡ ଶାନ୍ତ   କରିବାକୁ ସଖି
ପଚାରଇ 'ଭଲ ପାଅ' ?

ତୋଳ ଗୋ ଓଢ଼ଣା,   ଅନାଅ ନୟନେ ମୋର
ଗଣ୍ଡେ ମୋ ଲାଗୁ   ତୁମର କର୍ଣ୍ଣ-ଦୋଳ ।
ପ୍ରେମ କର ସଖି,   କର ପୁଣି ଅଭିମାନ
ହୃଦୟର ଗୋପନ କଥା ଶୁଣିବାକୁ
କର ମୋତେ ଆହ୍ୱାନ ।
ତେବେ ସିନା ଲିଭେ ଦାହ
କଥା କହ ଏବେ   କଥା କହ ସଖି
ପଚାରିଲେ 'ଭଲ ପାଅ' ?



## ଦୂରେ ରହ



ଦୂରେ ରହ ଦୂରେ ରହ
ସନ୍ନିଧି ଭବ ହେ ପ୍ରିୟ୍ କଣୋସ୍ମି
ହୋଇ ଉଠେ ଦୁର୍ବହ ।

# ଦୂରେ ରହ

ତବ ଯୌବନେ ଜୁଆର ଆସିଛି
ରୂପର ଊର୍ମି ଧରି
ଲୋମେ ଲୋମେ ତବ ସୁଷମା ଜାଗଇ
ଚେତନା ଉଠଇ ଥରି ।
ମଦ୍ୟ ଝରଇ ଅଧରରୁ ଅହରହ
ଦୂରେ ରହ, ଦୂରେ ରହ ।

ଶରୀର ଗଂଧେ ସୁରା ଅଛି ଲାଗି
ପାଗଳ କରାଏ ମତେ
ନୟନ ଟାଣୁଛି ବଡ଼ଶୀ ପରି ଗୋ
ନିତ୍ୟ ତୁମରି ପଥେ
କେ ଜାଣେ କି ହେବ ଭାବି ଲାଗେ ମତେ ଭୟ
ଦୂରେ ରହ ଦୂରେ ରହ ।

ରୂପସି, ତୁମର ରୂପ ସାଗରରେ
ଦେବି ଯଦି ଅବଗାହ
କହ କି ପାରିବ ଶେଷ ହେବ ମୋର
ଜୀବନର ସବୁ ଦାହ ?
ପରିଣାମ ଯେଣୁ ନାହିଁ ପାରେ କହି ଥୟ
ଦୂରେ ରହ ଦୂରେ ରହ ।

ତଥାପି ରୂପସି        କିଶୋରୀ ଭ୍ରମର
                    ଉଚ୍ଛଳ ଯୌବନେ
ଏକ ଗଣ୍ଡୁଷେ        ପାନ କରିବାର
                    ବାସନା ଜାଗଇ ମନେ
ରୂପ ତବ ସଖି,        ବଡ଼ନ୍ତି ତୀବ୍ର
                    ବଡ଼ନ୍ତି ଦୁର୍ବିଷହ
ଦୂରେ ରହ ଦୂରେ ରହ ।

ହୃଦୟରେ ଭୟାଳୁ        ନିକଟରେ ପଶୁର
                    ଦୂରେ ସେ ରହିବ କାହିଁ ।
ଅନ୍ତରେ ଯାର ନିବାସ ତାର ତ
                    ଦୂର ବା ନିକଟ ନାହିଁ !
ତେଣୁ ସେ କିଶୋରୀ        ମରମରେ ବନ୍ଧୁ
                    ମାରୁଅଛି ଅହରହ
ବିଫଳ କହିବା ସିନା        ତାଙ୍କୁ ସତତ
                    'ଦୂରେ ରହ ଦୂରେ ରହ' ।



# ପ୍ରେମର ଭାଷା



ସକଳେ ଡାକନ୍ତି 'ତମେ' 'ତମେ' ବୋଲି
ସେ 'ତମେ'ର ମୂଲ ନାହିଁ
ତମେ ଯେବେ ମତେ 'ତମେ' ବୋଲି କହ
ଏତେ ମିଠା କାହିଁ ପାଇଁ !

—୧୧୬—

## ଧ୍ୱନି

ଦୁଇଟି ଅକ୍ଷରେ କାହିଁ ନେଇଛ ସବୁ
କାନକୁ ମୋହକର ଲାଗେ
ଏତେ ଭାବ ସଙ୍ଗେ ଭରିଦିଏ ତାକୁ
କି ଗମ୍ଭୀର ଅନୁରାଗେ ?

କେତେ ତ ଡାକନ୍ତି ଦିନ ରାତି ସଦା
'ଶୁଣ' 'ଶୁଣ' ବୋଲି ମତେ
ତମେ ଯେବେ ଅଧି ଠାରି 'ଶୁଣ' କହ
କେ ଜାଣି କି ପ୍ରାଣେ ଘଟେ !

କେତେ ନ ଶୁଣିଛି ଦିନ ରାତି କହ
'ହାଇକାଓ' 'ହାଇକାଓ'
ତମେ ଯଦି ସବୁ ଡାକ 'ହାଇକାଓ'
ସୁଧା ଧାର ଢାଳି କାଓ ?

ହେ ପ୍ରେମ-ଦେବତା ଏ ପ୍ରେମୀ-ଯୁଗଳେ
କରୁଣା ତମର ଥାଉ
'ତମେ'-'ଶୁଣ' ତଳେ ଦୁଇଟି ଘ୍ଲରର
ଡାକ ଦୁହେଁ ଯେତେ ଖାଉ ।



# ଶଙ୍କିତ ସ୍ନେହ



ସ୍ୱର୍ଣ୍ଣ-କେଶୀ ସେଇ ବାଳିକାର ପ୍ରେମ ପାଇଁ
ଏ ଜୀବନେ ମୋର ନ ଦେବାର କିଛି ନାହିଁ ।

ମୋର ସୁଖ ଦେବ ତା'ର ସୁଖ ପାଇଁ ବଳି
ପଦଧୂଳି ତାର ଝାଡ଼ି ଦେବ କରେ ଧରି ।



ସେ ଯଦି କହିବ 'ଯାଅ ତୁମେ ମୋର ପାଖୁ'
ଚାଲି ଯିବି ଦୂରେ ତାକୁ ସୁଖୀ କରିବାକୁ ।

ସେ ଯଦି କହିବ 'ଗ୍ଲାନି ନାହିଁ ଯିବ ମନେ'
ଏ ଅଶ୍ରୁ ରହିବ ଲାଗି ତା'ର ଭାଲପଟେ ।

ସେ ଯଦି କହିବ 'ଏତେ ସେବା କାହିଁପାଇଁ'
ମୁଁ କହିବି 'ରାଣି, ଏଥୁ ବଳି ସୁଖ ନାହିଁ' !

ଏ ନୟନ-ନୀରେ ଆର୍ଦ୍ର ପ୍ରଣୟ ମମ
ଢାଳି ଦେବି ପଦେ ପୂଜାର ପୁଷ୍ପ ସମ ।

ମାନ ଗୌରବ ଯାହା କିଛି ଅଛି ମୋର
ଢାଳି ଦେବି କହି 'ରାଣି ଗୋ ଏ ସବୁ ତୋର' ।

ସବୁ ଦେବି ତାରେ । ଥରେ ଥରେ ଭିବେ ଖାଲି
ଏ ଜୀବନ ଯାର ଚରଣେ ମୁଁ ଦେବି ଢାଳି

ସେ ଯଦି ଖାତିର କରେ ନା ଏ ମୋର ଦାନ
କିପରି ସେଦିନ ଲୁଚାଇବି ଅପମାନ ?

# ପ୍ରେମ ଓ ଜରା



ତୁମରେ ପ୍ରିୟେ ଗୋ ପୁଣି ଦେଖିବ ଯେ ଦିନ
ଭାବେ ମୁଁ ଥିବ କି ସଙ୍ଗ ଯୌବନ ନବୀନ
ସେ ଦିନର ? ଅମଳିନ ଜବାପୁଷ୍ପ ସମ
ଆରକ୍ତ, କୋମଳ ସେଇ ଓଷ୍ଠ ଅନୁପମ,
ସଦ୍ୟସ୍ଫୁଟ ପୁଷ୍ପସମ ତରୁଣ-ମାଧୁରୀ
ସମସ୍ତ ବଦନ ସ୍ପର୍ଶି, ଅଙ୍ଗେ ଅଙ୍ଗେ ପରି

ଆଖି ନ ଜ୍ୟୋଛନା ସମ ଲାବଣ୍ୟ ସରସ,
ସୁଗୋଲ ପିଚ୍ଛିଳ ବାହୁ; ଚୁମ୍ବକ-ପରଶ
ଲୋମେ ଲୋମେ, ମୁଗ୍ଧ କରେ ତରୁଣ ସୁଷମା
କେଶୁ ନଷ୍ଟ ଯାଏ; ତମେ ଭାବ କି ଉପମା;
ଏମାନ ଦେଖିବ ପୁଣି ? ଦେଖିବ କି ପୁଣ
ତରୁଣୀର ସେ ହୃଦୟ ପ୍ରଣୟ-ନିପୁଣ ?
ରସବନ୍ତ ଓଷ୍ଠେ ଚୁମ୍ବି ଚୁମ୍ବି କି ଶବସ
ଫୁଟାଇ ପାରିବ ମୁହିଁ ସେଦିନର ପରି ?
ନାସିକାରେ ଘାନ କରି ଚିକୁର ବାସନା
ଭୁଲି କି ପାରିବ ପୁଣି ଜୀବନ-ଯାତନା ?
ନାହିଁ ସଖି ! ହାୟ ସଙ୍ଗ ଯଉବନ ଗତେ
ପ୍ରେମର ଉଷ୍ଣତା ତୁଟେ, କହୁଛନ୍ତି ମତେ
ଅଭିଜ୍ଞ ଜନେ ଗୋ ନିତି; ତେବେ କହ ସଖି
ସେ ପ୍ରେମ କେମନ୍ତେ ଆଜ ପାରିବା ଗୋ ରଖି
ଶୀତ-ରକ୍ତ ପ୍ରୌଢ଼ ଦେହେ ? ପଳିତ କପୋଳେ
ପ୍ରଣୟ ଫୁଟଇ କାହିଁ ? ତେଣୁ କହେ ତୋରେ
ପ୍ରିୟେ ଗୋ ଶିଥିଳ-ପକ୍ଷ୍ମ ଶୁରର ଚଞ୍ଚୁ ପାଇଁ
ଅଭିଳାଷ ନାହିଁ ବନ୍ଧୁ । ଘନ-ନୀର-ପାୟୀ-
ଚାତକ ଯେସନ ତୃଷ୍ଣା ରହେ ବର୍ଷ ଧରି,
ଘନଙ୍କର-ନୀରପାନ-ସ୍ମୃତି ନିଧି କରି

ସୃଷ୍ଟି ପୁଣି ବର୍ଷାନ୍ତରେ; ତୁମେ ସେଇପରି
ତୁଷ୍ଟ ରହ ସ୍ୱର ଧନେ ପ୍ରାଣଭର କରି
ଦେଇଗଲ ଯେ ଅନୁପମ ପ୍ରେମ ଯଉବନେ,
ଆଶା ରହି ଜନ୍ମାନ୍ତରେ । ପୁଣି ସଂଗୋପନେ

ସହକାର ତଳେ ଦେଖା ହେବ ଗୋ ସୁନ୍ଦରି,
ପୁଣି ସେ ଚଞ୍ଚଳ ଓଷ୍ଠ ଥରି ଥରି ଥରି
କହିବ ହୃଦୟ କଥା—'ସତେ ଭଲ ପାଅ' ?
ପୁଣି ଗୋ ଅନ୍ଧାର-ପଥେ ହୃଦୟର ଦାଉ,
ନିଭାଇବା ପାଇଁ ଦୁହେଁ ବାହାରିବା ସଙ୍ଗି;
ଚନ୍ଦ୍ରଣି-ଚନ୍ଦ୍ରରେ ତବ ନାସା ମୋର ରଙ୍ଗି
ପୁଣି ମୁଁ ନିବଡ଼େ ଦେବି ସଙ୍ଗିରେ ଆଘ୍ରାଣ,
ନୂତନ ପ୍ରଣୟ ପୁଣି ହୋଇବ ପଗ୍ରଣ
ଦୁହିଙ୍କର ବେଦନ ଗୋ; ତେବେ ରୂପଗତା
ଦୁଃଖ କିବା ? ଜନ୍ମାନ୍ତରେ ପାଇବା ମମତା
ନୂଆ କରି, ଶୁଭ୍ରକେଶେ ଦେଖା କାହିଁପାଇଁ ?
ନୂତନ ପ୍ରଭାତ ଆସେ ନିଶା ଯାଉ ପାହି ।



# ପ୍ରେମ ଓ ମୃତ୍ୟୁ



ଶୁଣିବ ଯେବେ ପ୍ରିୟା ଗୋ ମୋର
ପ୍ରଣୟୀ ତବ ଜଗତେ ନାହିଁ
ଆସିବ ମୋର ଭସ୍ମ ପାଶେ
ଦେବ ହେ ତାରେ ଦେହର ଛାଇ,

ପାରିବ ଯଦି ଭସ୍ମସରେ
ପଦ୍ମପାଦ ଛୁଇବ ଧୀରେ
ଜୀବନ ପୁଣି ଲଭିବ ସଖି,
ନଷ୍ଟପ୍ରାୟ ମୁଁ ମରଣ-ତୀରେ ।

